# ଆମ ପ୍ରତି ପ୍ରକୃତିର ବିଦ୍ରୂପ

ସାଦାକ୍ଟୋ ରୁଲା କାମୁସାଚୋ



# ଆମ ପ୍ରତି

# ପ୍ରକୃତିର ବିଦ୍ରୁପ

Complimentary Copy

Presented to Mr. A.K [illegible] with best wishes of the author

ଲେଖକ:

ନଦୀୟା ଚାନ୍ଦ କାନୁନ୍‌ଗୋ

ଡି.ଏଫ୍.ଓ (ଅବସର ପ୍ରାପ୍ତ)

ବର୍ଷା ପ୍ରକାଶିନୀ

ଶୈଳଶ୍ରୀ ବିହାର, ୪୭୯- (କି.ଏ.)

ଭୁବନନେଶ୍ୱର

ଆମ ପ୍ରତି
ପ୍ରକୃତିର ବିଦ୍ରୁପ

ଲେଖକ :
ନଦୀୟା ଚାନ୍ଦ କାନୁନ୍‌ଗୋ
ଡି.ଏଫ୍.ଓ (ଅବସର ପ୍ରାପ୍ତ)

ବର୍ଷା ପବ୍ଲିକେସନସ୍,
ଶୈଳଶ୍ରୀ ବିହାର,୪୭୯(ଜି.ଏ.)
ଭୁବନେଶ୍ୱର

ପ୍ରଥମ ପ୍ରକାଶନ – ୨୦୦୦

*ଅକ୍ଷର ଅଳଙ୍କରଣ :*
କମ୍ପ୍ୟୁପ୍ରିଣ୍ଟ
ଭାଷାକୋଷ ଲେନ୍,କଟକ – ୨

*ମୁଦ୍ରଣ :*
*ଅପ୍‌ଟିମା, ସୂତାହାଟ, କଟକ*

ମୂଲ୍ୟ : ଟ.୪୦.୦୦

AMA PRATI
PRAKRUTIRA BIDRUPA

*Author :*

**Nadiya Chanda Kanungo**
*D.F. O. (Rtd.)*

**BARSHA PUBLICATIONS**
*SailaShree Bihar-479(G.A.)*
*Bhubaneswar*

1st Edition - 2000

*D.T.P. at :*
COMPU PRINT
*Vasakosha Lane, Cuttack-9*
*Printed At :*
*Optima, Sutahat, Cuttack*

*Price : Rs. 40/-*

# ମୁଖବନ୍ଧ

ଏହି ପୁସ୍ତକ 'ଆମ ପ୍ରତି ପ୍ରକୃତିର ବିଦ୍ରୂପ' କେତେଗୁଡ଼ିଏ ପରିବେଶ ସମ୍ବନ୍ଧୀୟ ପ୍ରବନ୍ଧର ସମଷ୍ଟି । ଲେଖକ ଶ୍ରୀଯୁକ୍ତ ନଦୀୟାଚାନ୍ଦ୍ କାନୁନଗୋ ଓଡ଼ିଶା ବନବିଭାଗର ଜଣେ ବରିଷ୍ଠ କର୍ମକର୍ତ୍ତା ଭାବେ କାର୍ଯ୍ୟକରି ଅବସର ଗ୍ରହଣ କରିଛନ୍ତି । ତାଙ୍କର ଜନ୍ମସ୍ଥାନ କଟକ ଜିଲ୍ଲାର ଉପକୂଳ ଅଞ୍ଚଳ । କିନ୍ତୁ କର୍ମକ୍ଷେତ୍ର ପଶ୍ଚିମବଙ୍ଗର ସୁନ୍ଦରବନ ବନାଞ୍ଚଳରୁ ଆମ ରାଜ୍ୟର ସିମିଳିପାଳ ଓ ଅନ୍ୟାନ୍ୟ ବନାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ । କର୍ମକାଳ ଭିତରେ ତାଙ୍କର ବୃକ୍ଷଲତା, ଗୁଳ୍ମ ଓ ପଶୁପକ୍ଷୀଙ୍କ ସହିତ ନିବିଡ଼ ସମ୍ପର୍କ ଗଢ଼ି ଉଠିଥିଲା ଓ ଏହି ସମୟରେ ସେ ଏମାନଙ୍କ ବିଷୟରେ ତଥା ପରିବେଶ ସମ୍ବନ୍ଧରେ ଯଥେଷ୍ଟ ଅଭିଜ୍ଞତା ଅର୍ଜନ କରିଥିଲେ । ପରିବେଶ କହିଲେ ମୁଖ୍ୟତଃ ଆମେ ଆମ ଚତୁଃପାର୍ଶ୍ୱର ଉଦ୍ଭିଦ ଜଗତ, ପ୍ରାଣୀ ଜଗତ ଓ ବାୟୁମଣ୍ଡଳର ଅବସ୍ଥାଗୁଡ଼ିକୁ ବୁଝିଥାଉ । ଏହିସବୁ ବିଭାଗ ମାନଙ୍କରେ ଭାରସାମ୍ୟ ବିଭ୍ରାଟ ହେଲେ ପରିବେଶ ମଧ୍ୟ ବିଭ୍ରାଟ ଦେଖାଯାଏ ।

ଶ୍ରୀଯୁକ୍ତ କାନୁନଗୋ ଆମ ରାଜ୍ୟରେ ନିକଟ ଅତୀତରେ ଘଟିଯାଇଥିବା ମହାବାତ୍ୟା ମନୁଷ୍ୟକୃତ ବୋଲି ବହୁ ବଳିଷ୍ଠ ଯୁକ୍ତି ଦେଇ ଅନେକ ବୈଜ୍ଞାନିକ ତଥ୍ୟ ସମ୍ବଳିତ ପ୍ରବନ୍ଧମାନ ଲେଖିଛନ୍ତି । ସେହିପରି ସିମିଳିପାଳ ଜଙ୍ଗଲ ଧ୍ୱଂସ ଓଡ଼ିଶାରେ ପ୍ରାକୃତିକ ବିପର୍ଯ୍ୟୟ ଆଣି ଦେବ ବୋଲି ଚେତାବନୀ ଦେଇଛନ୍ତି । ତାଙ୍କ ପ୍ରବନ୍ଧ ଗୁଡ଼ିକ ବର୍ତ୍ତମାନ ସମୟରେ ଅତ୍ୟନ୍ତ ଉପଯୋଗୀ, ଏଥିରେ ସନ୍ଦେହ ନାହିଁ । ଏହି ପ୍ରବନ୍ଧଗୁଡ଼ିକ ଓଡ଼ିଶା ରାଜ୍ୟବାସୀଙ୍କୁ ପରିବେଶ ଓ ବାତାବରଣର ସୁରକ୍ଷା ପାଇଁ ସଚେତନ କରିପାରିଲେ ଓ ପ୍ରେରଣା ଦେଲେ ଲେଖକଙ୍କର ଶ୍ରମ ସାର୍ଥକ ହେବ ।

ଲେଖକଙ୍କର ପରିବେଶ, ଓଡ଼ିଶାର ଜଙ୍ଗଲ ଓ ଓଡ଼ିଶାର ପଶୁପକ୍ଷୀମାନଙ୍କ ବିଷୟରେ ଆହୁରି ଅନେକ ଲେଖା ବର୍ତ୍ତମାନ ସୁଦ୍ଧା ଅପ୍ରକାଶିତ । ଆଶା କରୁଛି, ସେଗୁଡ଼ିକ ଅତି ଶୀଘ୍ର ପ୍ରକାଶିତ ହେବ । ଲେଖକଙ୍କର ପ୍ରବନ୍ଧ ଗୁଡ଼ିକ ପାଠକମାନଙ୍କ ଦ୍ୱାରା ଆଦୃତ ହେଉ ଏହା ମୋର କାମନା ।

**ସରୋଜକାନ୍ତ ମିଶ୍ର**
*ଅବସରପ୍ରାପ୍ତ ଉପାଧ୍ୟକ୍ଷ*
ଓଡ଼ିଶା ପ୍ରଶାସନିକ ନ୍ୟାୟାଧିକରଣ,
ଭୁବନେଶ୍ୱର

# ଉତ୍ସର୍ଗ

ବୋଉ,

ତୋର ନିର୍ଭିକତା ମୋ ପାଇଁ ଆଶିର୍ବାଦ ହୋଇ ରହିଥାଉ ।

*ନଦୀୟା (ବଳି)*

# ସୂଚୀପତ୍ର





ଅରଣ୍ୟ ଏକ ପ୍ରକୃତିସୃଷ୍ଟ ପରିପୁଷ୍ଟ ଅନୁଷ୍ଠାନ ।
ଏଠାରେ ରାଜନୀତିର ଗୋଟି ଚାଳନା
କିମ୍ବା
ଅର୍ଥପାଇଁ ପଶାପାଲି ବିଛାଇଲେ
ସରିସରି ଆସୁଥିବା ଅରଣ୍ୟ କିମ୍ବା ଅରଣ୍ୟ-ଜୀବ ଶେଷ ହୋଇଯିବେ ।
କିନ୍ତୁ
ଭାବି ପିଢ଼ୀମାନଙ୍କ ପାଇଁ ରହିଯିବ ଗୁଡ଼ିଏ ଅନିବାର୍ଯ୍ୟ ଲାଞ୍ଛନା ।



# ଓଡ଼ିଶାର ଜୀର୍ଣ୍ଣ-ଜୀବ-ଭୌଗୋଳିକ ଉପକୂଳ
# ଓ
# ପ୍ରକୃତିର ମହାପ୍ରଳୟ

ପନ୍ଦର ଦିନ ବ୍ୟବଧାନ ମଧ୍ୟରେ ଗତ ୧୬.୧୦.୯୯ ରାତିରୁ ତା ୧୭.୧୦.୯୯ ଶେଷ ଏବଂ ତା ୨୯.୧୦.୯୯ ଠାରୁ ୩୧.୧୦.୯୯ ସକାଳ ସୁଦ୍ଧା ଦୁଇଥର ଲାଗ, ଲାଗ ବଙ୍ଗୋପସାଗର ମଧ୍ୟରୁ ଉପକୂଳବର୍ତ୍ତୀ ଅଞ୍ଚଳକୁ ଲଘୁଚାପ ଜନିତ ଭୟାବହ ବାୟୁ କେନ୍ଦ୍ରିଭୂତ ହୋଇ ୨୦୦ ରୁ ୩୦୦ କିଲୋମିଟର ଘଣ୍ଟାପ୍ରତି ବେଗରେ ପ୍ରବାହିତ ହେବା ଏବଂ ତତ୍‌ଜନିତ ମୂଷଳ ଧାରାରେ ବର୍ଷା ସମୁଦାୟ ଉପକୂଳବର୍ତ୍ତୀ ଅଞ୍ଚଳର ଜନ - ଜୀବନ ଧ୍ୱସ୍ତ- ବିଧ୍ୱସ୍ତ କରିବା ସହିତ ହଜାର ହଜାର ସଂଖ୍ୟାର ମଣିଷ, ଗୃହପାଳିତ ପଶୁ ଏବଂ ଆଞ୍ଚଳିକ ଜୀବମାନଙ୍କର ସଂହାରର ଆୟୁଧ ହୋଇଛି । ସରକାରୀ ଓ ବେସରକାରୀ ସ୍ତରରେ କ୍ଷୟକ୍ଷତି ଘଟାଇ ଉପକୂଳବର୍ତ୍ତୀ ଲୋକଙ୍କୁ ଶାରିରୀକ, ମାନସିକ ଓ ଆର୍ଥିକ ଯନ୍ତ୍ରଣା ଦେବା ସହିତ ସେମାନଙ୍କ ଆର୍ଥିକ ମେରୁଦଣ୍ଡକୁ ପ୍ରଚଳିତ ପୀଢ଼ି ପାଇଁ ସଂପୂର୍ଣ୍ଣ ଅଚଳ କରି ଦେଇଛି । ଏଭଳି ଭୟାବହ ବାତ୍ୟା କେବେ ଘଟିଥିବାର ଇତିହାସ କହେ ନାହିଁ । ଏହା ବୋଧହୁଏ ଅସ୍ତମାନ ଶତାବ୍ଦୀର ରକ୍ତରଞ୍ଜିତ ଉପହାର ଉପକୂଳବର୍ତ୍ତୀ ଅଧିବାସୀଙ୍କ ପାଇଁ । ଏହି ଶତାବ୍ଦୀରେ ଘଟିଯାଇଥିବା ଲୋକହର୍ଷଣକାରୀ ଘଟଣା ମଧ୍ୟରେ ୧୯୭୧ ମସିହାରେ କେନ୍ଦୁଝର ଜିଲ୍ଲାରେ ଘଟିଥିବା ବାତ୍ୟା, ୧୯୭୯ ମସିହାରେ କେନ୍ଦୁଝର ଏବଂ ମୟୂରଭଞ୍ଜ ଜିଲ୍ଲାର କେତେକ ଅଞ୍ଚଳରେ ଘଟିଥିବା ଘୂର୍ଣ୍ଣିବାତ୍ୟା ବା ଟର୍ନାଡ଼ୋ ଏବଂ ଶତାବ୍ଦୀର ଶେଷବର୍ଷରେ ଦେଇଗଲା ଅଲିଭା ଯନ୍ତ୍ରଣା, ଉପକୂଳ ଅଞ୍ଚଳରେ ପ୍ରଳୟଙ୍କରୀ ବାତ୍ୟା ବିଭୀଷିକା ।

ପୂର୍ବର ପୂର୍ବବଙ୍ଗ ଏବର ବଙ୍ଗଳାଦେଶ ଆମ ପରି ପ୍ରକୃତିକୃତ ଉତପୀଡ଼ନର ସାରବ୍ୟ ହୁଏ ପ୍ରାୟ ଅଳ୍ପ ବ୍ୟବଧାନରେ । ଏହା ବିଶେଷଭାବେ ଘଟୁଥିଲା ଷାଠିଏ ଦଶକରେ । ଯାହା ଜଣାଯାଏ ୧୯୭୦ ମସିହାର ସାମୁଦ୍ରିକ ବାତ୍ୟାରେ ସର୍ବାଧିକ ଲୋକ ମରିଥିଲେ ୧୦,୦୦,୦୦୦ ଏବଂ ବାୟୁର ବେଗ ଥିଲା ଘଣ୍ଟା ପ୍ରତି ୨.୦୦ କିଲୋମିଟର କିମ୍ବା କିଛି କମ୍ ବେଶୀ କିନ୍ତୁ ଆମର ଏହି ଅଶାନ୍ତ ହିଂସ୍ରକ ବୟବ୍ୟର ବେଗ ଥିଲା ୨୦୦ ରୁ ୩୦୦ କି.ମି. ଘଣ୍ଟା ପ୍ରତି । ଏଣୁ ପ୍ରଳୟର ଭୟାବହତା ଓ ଜନ ଜୀବନ ସଂହାର ଆମ ଉପକୂଳବର୍ତ୍ତୀ ଜନବହୁଳ ଅଞ୍ଚଳରେ ସହଜେ ଅନୁମେୟ ।

## ଆମ ପ୍ରତି ପ୍ରକୃତିର ବିଦ୍ରୁପ

ଲଘୁଚାପ ଜନିତ ବାତ୍ୟା ଉପକୂଳବର୍ତ୍ତୀ ଅଞ୍ଚଳ ପାଇଁ ନୂଆ ନୁହେଁ, କିନ୍ତୁ କେବେ ଦେଖା ନଥିବା କେବେ ଶୁଣାନଥିବା ତାହାର ପ୍ରଖରତା, ତାହାର ଭୟାବହତା ସମସ୍ତ ଉପକୂଳବାସୀଙ୍କୁ ଉତ୍ପିଡ଼ନର ଶେଷ ପର୍ଯ୍ୟାୟରେ ପହଞ୍ଚାଇ ଦେଇଛି । ଏହା ଯେ ଶେଷ କିମ୍ବା ଏହାଠାରୁ ଅଧିକ ପ୍ରଳୟଙ୍କାରୀ ବାତ୍ୟା ଆମର ଅପେକ୍ଷାରତ ଏହା ଭାବିବା ଦୁର୍ଭେଦ୍ୟ । ସାଧାରଣ ଲଘୁଚାପ ଜନିତ ବାତ୍ୟା ଓ ବର୍ଷା ଉପକୂଳ ପ୍ରତି ରହିଛି ଏବଂ ରହିଥିବ, ଏବଂ ଜୀବଜଗତର ଅନେକ ଉଦ୍ଭିଦ ଓ ପ୍ରାଣୀ ଅଛନ୍ତି ଯେଉଁମାନେ ଏପରି ଜଳବାୟୁରେ ଅଭ୍ୟସ୍ତ ଏବଂ ଏ ପ୍ରକାର ଜଳବାୟୁ ସେମାନଙ୍କ ପ୍ରତି ଅନୁକୂଳ ।

କିନ୍ତୁ ପ୍ରକୃତିର ଅସହିଷ୍ଣୁତା ଓ ମାତ୍ରାଧିକ ଉତ୍ପୀଡ଼ନ ପାଇଁ ଆମେ ସମୂହ ଭାବେ ଦାୟୀ । ଯାହାର ନିରାକରଣ ଅଛି, ଆମେ ଜାଣୁ, କିନ୍ତୁ ନିଷ୍ଠା ଓ ସାହାସର ଅଭାବ ଯୋଗୁ ଏହା ଘଟୁଛି, ପ୍ରକୃତିର ବ୍ୟତିକ୍ରମ ଯେ ପୂରାପୂରି ଏଡ଼ାଇ ଦେଇ ହେବ, ଏହା କୁହାଯାଇନ ପରେ । କିନ୍ତୁ ଏକଥା ସତ ପ୍ରକୃତିର ବ୍ୟତିକ୍ରମକୁ ପ୍ରକୃତି ହିଁ ପ୍ରତିରୋଧ କରେ । ଆମେ ତାହାର ସୁଯୋଗ ନେବା କଥା, ପରନ୍ତୁ ଆମେ ପ୍ରକୃତି ସହିତ ସହଯୋଗ କରିବା ତ ଦୂରର କଥା, ଆମେ ପ୍ରକୃତି ବିରୁଦ୍ଧରେ ଯାଉଛୁ । ଯାହାର ପରିଣାମ ଆମକୁ ହିଁ ଭୋଗିବାକୁ ହେବ ।

ଆମ ଉପକୂଳବର୍ତ୍ତୀ ଅଞ୍ଚଳ କର୍କଟକ୍ରାନ୍ତିର ଟିକିଏ ଦକ୍ଷିଣକୁ ୨୦ଡିଗ୍ରୀ ୧୫ ମିନିଟ୍‌ରୁ ୨୦ଡିଗ୍ରୀ ୭୫ମିନିଟ୍ ଅକ୍ଷାଂଶର ଉତ୍ତର ମଧରେ ଏବଂ ୮୭ ଡିଗ୍ରୀ ରୁ ୮୮ ଡିଗ୍ରୀ ୪୦ମିନିଟ୍ ପୂର୍ବ ଦ୍ରାଘିମା ମଧରେ ଅବସ୍ଥିତ । ଏହି ବିସ୍ତୀର୍ଣ୍ଣ ଭୂଭାଗର ଉତ୍ତରରେ ଚାନ୍ଦିପୁର (ବଳରାମଗଡ଼ି) ବୁଢ଼ାବଳଙ୍ଗ ମୁହାଣ, ପୂର୍ବରେ ବଙ୍ଗୋପସାର, ଦକ୍ଷିଣରେ ଦେବୀ ନଦୀର ମୁହାଣ ଏବଂ ପଶ୍ଚିମରେ ଅବିଭକ୍ତ କଟକ ଜିଲ୍ଲା ଅବସ୍ଥିତ । ଏହାର ଦୈର୍ଘ୍ୟ ପ୍ରାୟ ୨୦୦ କି.ମି. ଏବଂ ପ୍ରସ୍ଥ ୮୦ କି.ମି ଏବଂ ଏହି ବିସ୍ତୀର୍ଣ୍ଣାଞ୍ଚଳ ପ୍ରଧାନତଃ ମହାନଦୀ, ବ୍ରାହ୍ମଣୀ, ବୈତରଣୀ ଏବଂ ସେମାନଙ୍କ କ୍ଷୁଦ୍ର ଶାଖାମାନଙ୍କ ଦ୍ୱାରା ଖଣ୍ଡବିଖଣ୍ଡିତ ହୋଇ ଏକ ସ୍ୱତନ୍ତ୍ରତା ରକ୍ଷା କରୁଥିବା ଜୀବ ପରିବେଶ ସୃଷ୍ଟି କରିଥାଏ । ଏହି ଭୂଭାଗରେ ପ୍ରଧାନତଃ ଦୁଇ ପ୍ରକାର ମୃତ୍ତିକା ଦେଖିବାକୁ ମିଳେ । ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳ ବାଲୁକା ବେଳାଭୂମି ସୃଷ୍ଟି କରୁଥିବାବେଳେ ନଦୀ, ଶାଖାନଦୀ ଏବଂ ନାଳମୁହାଣ ଓ ତଦ୍‌ଜନିତ ସୃଷ୍ଟ ପଠା, କ୍ଷୁଦ୍ର-ଉପଦ୍ୱୀପ ଓ ତ୍ରିକୋଣଭୂମିରେ ସମୁଦ୍ର ଜୁଆର ଜନିତ ସ୍ତରୀକୃତ ଉର୍ବର ପଟୁ ଜମି ଦେଖିବାକୁ ମିଳେ । ଏହି ସମୁଦାୟ ଉପକୂଳ ଅଞ୍ଚଳଟି କ୍ରାନ୍ତିୟ ଓ ଉପକ୍ରାନ୍ତିୟ ଜଳବାୟୁ ଅନ୍ତର୍ଭୁକ୍ତ ।

## ଆମ ପ୍ରତି ପ୍ରକୃତିର ବିଦ୍ରୁପ

ସମୁଦ୍ର ଲବଣାକ୍ତ ବାଲିରେ ଏକ ପ୍ରକାର ଉଦ୍ଭିଦ ଦେଖାଯାଉ ଥିବାବେଳେ ଜୁଆରିଆ ଭୂଖଣ୍ଡରେ ଭିନ୍ନ ଧରଣର ଉଦ୍ଭିଦ ଏବଂ ପ୍ରାଣୀ ଜଗତ ଦେଖିବାକୁ ମିଳନ୍ତି । ଏହି ଲବଣାକ୍ତ ଜୁଆରିଆ କ୍ରମପରିବର୍ତ୍ତନଶୀଳ ଭୂଖଣ୍ଡରେ ଯେଉଁ ଉଦ୍ଭିଦ ଜଗତ ଦେଖିବାକୁ ମିଳେ ତାକୁ ମାଙ୍ଗ୍ରୋଭ (Mangrove) ଜଙ୍ଗଲ କୁହାଯାଏ । ମାଙ୍ଗ୍ରୋଭ ଶବ୍ଦ ମଙ୍ଗଲ ବା ମଙ୍ଗଳକୁ ବୁଝାଏ । ଏବଂ ଏହା ପର୍ତ୍ତୁଗୀଜ ଶବ୍ଦ ମାଂଗୁ (Mangue) ରୁ ଆସିଅଛି । କିନ୍ତୁ 'ମଙ୍ଗଳ' ଏବେ ମଙ୍ଗଳ -ଜଙ୍ଗଲର ନିୟନ୍ତ୍ରଣରେ ନାହିଁ । ଏଠାରେ ଦେଖାଯାଉଥିବା ଉଦ୍ଭିଦ ସବୁ ଚିରହରିତ୍ (Ever green) । ଏଠାକାର ଜୀବ ଭୌଗୋଳିକ ଜଳବାୟୁର ବିଶେଷତ୍ୱ ହେଲା ସମୁଦ୍ରର ଲୁଣାପାଣି ଓ ନଦୀର ମଧୁର ପାଣି ଅହରହ ଢେଉ ବା ତରଙ୍ଗ ମାଧ୍ୟମରେ ସମ୍ମିଶ୍ରଣ ଘଟୁଥିବାରୁ କୌଣସି ସମୟରେ ମୁହାଣରେ ଜଳାଭାଗର ଉତ୍ତାପ ୨୦ ଡିଗ୍ରୀ ସେ.ଗ୍ରେ. ନିମ୍ନକୁ ଯାଏ ନାହିଁ ଓ ଗଛଗୁଡ଼ିକର ଉଚ୍ଚତା ଅଳ୍ପ ଅଧିକେ ୩ ମିଟର ମଧ୍ୟରେ ସୀମିତ ରୁହେ । ମାଙ୍ଗ୍ରୋଭ ଜଙ୍ଗଲର ଉଦ୍ଭିଦ ୨୦ ସେ.ମି.ରୁ ନିମ୍ନ ଉତ୍ତାପ ଥିବା ଜଳବାୟୁରେ ତିଷ୍ଠି ପାରନ୍ତି ନାହିଁ । ଉଚ୍ଚ ଜୁଆର ସମୟରେ ଜୁଆର ଲୁଣା ପାଣି ଏହି ଅଞ୍ଚଳକୁ ସବୁ ସମୟରେ ମାଡୁଥାଏ । ଏଣୁ ଏହି ଉଦ୍ଭିଦ ଜଗତ ମଧ୍ୟରୁ ଅନେକ ଉଦ୍ଭିଦ ଅସାଧାରଣ ବଞ୍ଚିବାର ପ୍ରକ୍ରିୟା ନେଇ ଜନ୍ମ ଲାଭ କରିଥାନ୍ତି । ସେ ସବୁ ପ୍ରକ୍ରିୟା ମଧ୍ୟରେ ସ୍ତମ୍ଭ ଚେର ଶ୍ୱାସଚେର ଲବଣ ନିଷ୍କାସନ ଗ୍ରନ୍ଥିଶକ୍ତି, ମଞ୍ଜି ଚାରା ହୋଇ ଗଛରୁ ଛିଡ଼ିବା ଯାହାକି ଜୁଆରିଆ ଜଙ୍ଗଲ ବ୍ୟତୀତ ଅନ୍ୟ କୌଣସି ସ୍ଥାନର ଉଦ୍ଭିଦ ମାନଙ୍କ ଠାରେ ଏସବୁ ଗୁଣାତ୍ମକ ପ୍ରକ୍ରିୟା ଦେଖିବାକୁ ମିଳେ ନାହିଁ । ଏହିସବୁ ସ୍ୱତନ୍ତ୍ର ଗୁଣର ଅଧିକାରୀ ହୋଇଥିବାରୁ ଏମାନେ ଜୁଆରିଆ ଜଳବାୟୁର ଚାପ ଏବଂ ପ୍ରଭାବରେ ତିଷ୍ଠି ରହିବାକୁ ସକ୍ଷମ ହୁଅନ୍ତି । ଏହି ଜୁଆରିଆ ଜଙ୍ଗଲରେ ୬୨ ରୁ ୬୪ କିସମର ଉଦ୍ଭିଦ ଦେଖିବାକୁ ମିଳିଥାନ୍ତି । ବିଷୁବ ମଣ୍ଡଳୀୟ ଅନ୍ୟ କୌଣସି ଜାତିର ଉଦ୍ଭିଦ ଏହି ଜୀବ ଭୌଗୋଳିକ ପରିବେଶରେ ବଞ୍ଚି ରହିବାକୁ ସକ୍ଷମ ହୁଅନ୍ତି ନାହିଁ । ଏଠାରେ ପ୍ରାଧାନ୍ୟତା ଲାଭ କରିଥିବା ବୃକ୍ଷମାନେ ହେଲେ ରାଇଜୋଫୋରସି (Rhizophoraceae) ,ଅଭିସେନିଏସି (Avicenniaceae) , ସୋନେରୋସିଏସି (Sonneratiaceae) ପରିବାରର ଉଦ୍ଭିଦମାନେ । ଏହା ବ୍ୟତୀତ ହେରିଟିଏରା ଫୋମେସ୍(Heritieara fomes) ଫୋଏନିକ୍ସ ପାଲୁଡୋସା (Pghoenix Paludosa) ଏବଂ ନିପା ଫ୍ରୁଟିକାନ୍ସ (Nypa fruticans) ଉଦ୍ଭିଦମାନେ ମଧ୍ୟ ଏହି ଜଳବାୟୁରେ ପ୍ରାଧାନ୍ୟତା ଲାଭ କରି ଆସୁଛନ୍ତି । କିନ୍ତୁ ନିପା ଫ୍ରୁଟିଶନ୍ସ (ଏକ ପ୍ରକାର

ଘାସ) ଏବେ ଆମ ଲୁଣା ଜଙ୍ଗଲରୁ ବିଲୁପ୍ତ ହୋଇ ଗଲେଣି । ସୁନ୍ଦର ବନ ଜଙ୍ଗଲରେ ଏହି ଘାସ ବହୁଳ ଭାବେ ଦେଖିବାକୁ ମିଳନ୍ତି । ଏଣୁ ସେଠାରୁ ଏହି ଘାସ ଅଣାଯାଇ ପାରେ । ଲୁଣା ଜଙ୍ଗଲରେ ଏହାର ଉପାଦେୟତା ବହୁ ପ୍ରଶଂସିତ, କାରଣ ମୃତ୍ତିକା କ୍ଷୟଜନିତ କୂଳକୁ କୁଆରିଆ ତରଙ୍ଗରୁ ସବୁ ସମୟରେ ଏହା ରକ୍ଷା କରେ । ଆମ ଲୁଣା ଜଙ୍ଗଲରେ ଯେଉଁସବୁ ପ୍ରକୃତିଦତ୍ତ ଉଦ୍ଭିଦ ଦେଖିବାକୁ ମିଳନ୍ତି, ଠିକ ସେହି ସବୁ ଉଦ୍ଭିଦ ପୂର୍ବ ଏବଂ ପଶ୍ଚିମବଙ୍ଗ ସୁନ୍ଦରବନ ଜଙ୍ଗଲରେ ଅଛନ୍ତି । ଓଡ଼ିଶାର ଲୁଣା ଜଙ୍ଗଲ ପଶ୍ଚିମବଙ୍ଗ ତଳକୁ ଭାରତର ଦ୍ୱିତୀୟ ବୃହତ୍ତମ ଲୁଣା ବା ମାଙ୍ଗ୍ରୋଭ ଜଙ୍ଗଲ ଯାହାକି ଖୁବ୍ ଦ୍ରୁତଗତିରେ ସରି ସରି ଆସୁଛି । ଆରବ ସାଗର ତୀରରେ ଅବସ୍ଥିତ ଲୁଣା ଜଙ୍ଗଲରେ ଆମ ଅପେକ୍ଷା ଅଧିକ ଜାତିର ଉଦ୍ଭିଦ ଦେଖିବାକୁ ମିଳୁଥିଲେ ମଧ୍ଯ ଆମପରି ଦୀର୍ଘତମ ନୁହେଁ । ସୁନ୍ଦରବନ ଲୁଣା ଜଙ୍ଗଲ ବିଶ୍ୱରେ ସର୍ବ ବୃହତ୍ତମ ଏକକ ଲୁଣା ଜୀବ ଭୌଗୋଳିକ ଭୂଭାଗ । ଯାହାକି ବର୍ତ୍ତମାନ ବଙ୍ଗଳା ଦେଶର ଖଲଣା ଜିଲ୍ଲା ଓ ଆମ ପଶ୍ଚିମବଙ୍ଗର ୨୪ ପ୍ରଗଣା ଜିଲ୍ଲା ମଧ୍ଯରେ ଅବସ୍ଥିତ । ସୁନ୍ଦରବନର ମୋଟ ଅଞ୍ଚଳ ୧୦,୦୦୦ ବର୍ଗ କିଲୋମିଟର । ଏଥିରେ ୬୬ ଶତାଂଶ ଅଥବା ୬,୬୦୦ ବର୍ଗ କି.ମି. ସ୍ଥଳଭାଗ । ଏଥିମଧ୍ଯରୁ ୫,୮୦୦ ବର୍ଗ କି.ମି. ବଙ୍ଗଳା ଦେଶରେ ଏବଂ ଅବଶିଷ୍ଟାଂଶ ୮୦୦ ବର୍ଗ କି.ମି. ଆମ ପଶ୍ଚିମବଙ୍ଗରେ ଅବସ୍ଥିତ । ଆମ ଲୁଣା ଅଞ୍ଚଳ ଭୂଖଣ୍ଡରେ ଥିବା ମୋଟ ଜୀବଜଗତ ସୁନ୍ଦର ବନ ଜୀବ ଜଗତ ସହିତ ସମକକ୍ଷ ହେବ । ସେଠାକାର ବାଘ, ଯାହାକି ବିଶ୍ୱରେ ଅନ୍ୟ କୌଣସି ଲୁଣା ଜଙ୍ଗଲରେ ଦେଖିବାକୁ ମିଳନ୍ତି ନାହିଁ; ତାକୁ ଛାଡ଼ିଦେଲେ ଅନ୍ୟସବୁ ପ୍ରାଣୀ ପ୍ରାୟ ଏଠାରେ ଅଛନ୍ତି ।

**ପ୍ରକୃତିର ଦୁର୍ବିପାକ ବିରୋଧୀ ପରିକଳ୍ପନା: (Nature's Anti-Disaster Planning)**

ଓଡ଼ିଶାର ମୋଟ ମଙ୍ଗଳ ବା କଚ୍ଛଶାକାଳି ଉଦ୍ଭିଦକୁ ତିନୋଟି ବନମଣ୍ଡଳ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ଯଥା:

**ପ୍ରଥମ ମଙ୍ଗଳ ବନ ମଣ୍ଡଳ :**

ଏହା ହେଉଛି ସମୁଦ୍ର ତୀରକୁ ଲାଗିଥିବା ଅତ୍ୟଧିକ ଲବଣାକ୍ତ ଅଞ୍ଚଳ । ଯେଉଁଠାରେ ବିଶୁଦ୍ଧ ମଙ୍ଗଳ ଉଦ୍ଭିଦମାନେ ଦେଖିବାକୁ ମିଳନ୍ତି । ସେମାନେ ଉପକୂଳରକ୍ଷୀ ଅଥବା କୋଷ୍ଟଗାର୍ଡ଼ ଅଥବା ସୀମାନ୍ତ ମଙ୍ଗଳ ବାଟାଲିଆ ରୂପେ କାର୍ଯ୍ୟ କରନ୍ତି । ଏବଂ ପ୍ରକୃତି ତାଣ୍ଡବର କଡ଼ା ପ୍ରତିରୋଧ କରନ୍ତି । ଏହିସବୁ ପ୍ରହରୀ ବୃକ୍ଷମାନଙ୍କର ଉଚ୍ଚତା

୭ ମିଟର ଉର୍ଦ୍ଧ୍ୱ ମଧ୍ୟରେ ସୀମିତ । ସେସବୁ ବୃକ୍ଷମାନେ ହେଲେ, ଗୁଆ (Excoecaria agallocha) ଗରାଣି (Ceriops decandra) ହେନ୍ତାଳ (Phoenix Paludosa) ଟିକେ ଶୁଖିଲା ସ୍ଥାନରେ ମିଳନ୍ତି । ଶିଶୁମାର (Xylocarpus granatum) ପିତାକୁରୁଆ (Xylocarpus mekongensis) ବନ୍ଦରୀ (Bruquiera gymnorrhiza) ଧନୀଧାନ (Portersia coarctata) ଘାସ, ଏବଂ ବଣରୁଅ (Aeqegialitis rotundifolia) ଇତ୍ୟାଦି । ଏହିସବୁ ଉଭିଦମାନେ ଅତି ଉଚ୍ଚ ହୋଇ ନପାରିବାର କାରଣ ଏମାନେ ଅତିଶୟ ପବନ ସ୍ରୋତର ସମ୍ମୁଖୀନ ହୋଇଥାନ୍ତି । ଏମାନେ ନଦୀ ମୁହାଣ ସଂଲଗ୍ନ ସ୍ଥାନମାନଙ୍କରେ ବିଶେଷ ଦେଖାଯାଆନ୍ତି ।

**ଦ୍ୱିତୀୟ ମଙ୍ଗଳ ବନ ମଣ୍ଡଳ :**

ଏମାନେ ମଧମ ମଙ୍ଗଳ- ବନ-ବାଟାଲିଆ ରୂପେ କାର୍ଯ୍ୟ କରନ୍ତି ଏବଂ ମଧମ ଧରଣର ଲବଣାକ୍ତ ମୃତ୍ତିକାରେ ଗଢ଼ି ଉଠିଥାନ୍ତି । ସେହିସବୁ ଉଭିଦମାନେ ହେଲେ, ରାଇ (Rhizophora mucronata) ଯାହାକୁ ପ୍ରକୃତ ମଂଗଳ କୁହାଯାଏ । ବନୀ (Avicennia officinalis) ବା ଧଳା ମଙ୍ଗଳ, ଗରାଣି ପରିବାରର (Ceriops candallena) ବା କଳାମଙ୍ଗଳ, (ଆମ ଲୁଣା ଜଙ୍ଗଲରେ ଦେଖିବାକୁ ମିଳେ ନାହିଁ), ଗରାଣି (Ceriops tagal), ସିଂଙ୍ଗଳ ବନୀ (Avicennia marina) କେରୁଆଁ (Sonneratia alba) ବନ୍ଦରୀ (Bruquiera gymnorrhiza) କାଳିଆଚୁଆ (Bruquiera parviflora) ବନ୍ଦରୀ (Bruguiera Cylindrica), ଶିଶୁମାର (xylocarpus qranatum) ସିନ୍ଦୁକା (Kandelia Candel), ସୁନ୍ଦରୀ (Heritiera fomes) ଧଳାବନୀ (Avicennia alba), ଏମାନଙ୍କ ସହିତ ମିଶିକରି ଥାନ୍ତି ଗୁଆଁ (Excoecaria agaloaha) , ଗରାଣି (ceriops decandra) ପ୍ରଭୃତି ଅନ୍ୟ ଉଭିଦମାନେ । ଏମାନଙ୍କ ସଙ୍ଗଠିତ ରୋଧଶକ୍ତି ଉପକୂଳବର୍ତ୍ତୀ ଭୂଭାଗର ସୁରକ୍ଷା ବଳୟ ଭାବେ କାର୍ଯ୍ୟ କରେ । ଏମାନେ ସୁଦୃଢ଼ ପ୍ରାଚୀର ସଦୃଶ୍ୟ ପ୍ରକୃତିର ମୁକାବିଲା କରନ୍ତି ଏବଂ ପ୍ରଥମ ମଙ୍ଗଳ ବଳୟର ଶକ୍ତିକୁ ଦ୍ୱିଗୁଣିତ କରିଥାନ୍ତି । ଏହା ସହିତ ନୂତନ ଭାବେ ସୃଷ୍ଟ ହୋଇଥିବା ପଟୁପଠାକୁ ସୁରକ୍ଷିତ କରିବା ସହିତ ତାହାର ସ୍ଥିତିକୁ ମଜଭୁତ କରନ୍ତି । ପ୍ରଥମ ଏବଂ ଦ୍ୱିତୀୟ ଜୁଆରିଆ ବନମଣ୍ଡଳର ପ୍ରତ୍ୟକ୍ଷ ବିରୋଧ ଦ୍ୱାରା ସମୁଦ୍ରର ଜୁଆର ପାଣି ତୀରବର୍ତ୍ତୀ ଆଭ୍ୟନ୍ତରୀଣ ଭୂଭାଗକୁ ମାଡ଼ିଯାଇପାରେ ନାହିଁ । ସମୁଦ୍ରରୁ ଭୂଭାଗକୁ

ପ୍ରବାହିତ ବାୟୁ ପ୍ରଥମ ଏବଂ ଦ୍ୱିତୀୟ ମଙ୍ଗଳ ବନ-ମଣ୍ଡଳ ସହିତ ବାଧାପ୍ରାପ୍ତ ହୋଇ ଉର୍ଦ୍ଧ୍ୱଗାମୀ ହୋଇଥାଏ ।

## ତୃତୀୟ ବା ଶେଷ ମଙ୍ଗଳ ବନ-ମଣ୍ଡଳ

ଏହି ମଣ୍ଡଳଟି ସବୁଠାରୁ ଉତ୍କୃଷ୍ଟତର ପରିବେଶ ସୃଷ୍ଟି କରେ । କାରଣ ନଦୀମାନଙ୍କର ମଧୁର ପାଣି ସଦାସର୍ବଦା ଏହି ଅଞ୍ଚଳରେ ମାଡୁଥାଏ । ଏଠାରେ ମୃତ୍ତିକାର ଲବଣାକ୍ତ ମାତ୍ରା ମଧ କମ୍ ଓ ଜମି ଅତି ଉର୍ବର; ଏବଂ ଜମି ସମୁଦ୍ରପତନଠାରୁ ଅପେକ୍ଷାକୃତ ଉଚ୍ଚ । ଏହି ଅଞ୍ଚଳକୁ ତଣ୍ଡା ବୋଲି କୁହାଯାଏ । ଏଠାରେ ଧାନ ଠାରୁ ଆରମ୍ଭ କରି ଯେକୌଣସି କୃଷି ଉଦ୍ଭିଦ ଲାଭଜନକ ଭାବେ ଚାଷ କରାଯାଇପାରିବ । ପ୍ରଥମ ଏବଂ ଦ୍ୱିତୀୟ ମଙ୍ଗଳ-ବନ-ମଣ୍ଡଳ କାର୍ଯ୍ୟ କରୁଥିବାରୁ ଏଠାରେ ପବନର ବେଗ ଅପେକ୍ଷାକୃତ କମ୍ । ଏଣୁ ଗଛଗୁଡ଼ିକର ଉଚ୍ଚତା ୨୦ ମିଟର ପର୍ଯ୍ୟନ୍ତ ହୋଇଥାଏ । ଏହି ବନ ମଣ୍ଡଳ, ପ୍ରଥମ ଓ ଦ୍ୱିତୀୟ ବନମଣ୍ଡଳ ସହିତ ସହଯୋଗ ଦେଇ ପ୍ରବାହିତ ବାୟୁ ଓ ଜୁଆର ଜଳକୁ ଏହି ଅଞ୍ଚଳରେ ପ୍ରବେଶ କରିବାକୁ ଦେଇ ନଥାନ୍ତି । ଏଠାରେ ପ୍ରଧାନ ପ୍ରଧାନ ବୃକ୍ଷମାନଙ୍କ ମଧ୍ୟରେ ଅଛନ୍ତି –

ବୃକ୍ଷ : ସୁନ୍ଦରୀ (Heritiera fomes) କେରୁଆଁ (Sonneratia opetala) ଓରୁଅ (Sonneratia griffithii), ଓରୁଅ (Sonneratia Casolaris), ସିଙ୍ଗଡ଼ା (Cynometra ramiflora) ତଅଁରା (Aglaia cucullata), ଗୁଆଁ (Excoecavia agalloeha), ଧଳାସୁନ୍ଦରୀ (Heritiera littoralis), ଚୁରନ୍ଦା (Lumnitzeracemose) ବୁଦାଗଣିଆ (Hibiscus tiliaceus) ଗୋହିରା (Dalburgia spinosa), ନେନ୍ତେଇ (Caesalpinia Cristata) ଚୁରନ୍ଦା (Lumnitzera recemosa), (ଲଇ), କଟିରାଲଇ (Derris trifoliata), ଲଟିଚାର (Finlaysonia Marritina) (ଲଇ) ଲଟି ସୁନ୍ଦରୀ (Browniowia tersa), ଜାଗୁଲା (Tamarix indica) ପାଣିଝାଉଁ, ଲୁଣିକିଆ (Pandanus fascicularis)

ଏହା ବ୍ୟତୀତ ଯେଉଁଠାରେ କୌଣସି କାରଣରୁ ଲୁଣା ଜଙ୍ଗଲ ନଷ୍ଟ ହୋଇଯାଇଥାଏ, ସେଠାରେ ଏକ ଜାତିର ଫର୍ଣ୍ଣ ଗରଗରି (Acrostichum aureum) ପହଞ୍ଚି ସେହି ଅଞ୍ଚଳକୁ ତାଙ୍କ ଅକ୍ତିଆରକୁ ନେଇ ମୃତ୍ତିକା କ୍ଷୟରୁ ରକ୍ଷା କରନ୍ତି । ସାଗର ପବିତ୍ର (Seaholly), ହକଞ୍ଚ (Acanthus ilicifolius) ହକଞ୍ଚ (Acanthus

volubilis) ବୁଦାସବୁ ପାଣିଧାରମାନଙ୍କରେ ଘଞ୍ଚଭାବେ ବଢ଼ି ପ୍ରକୃତିର ଶୋଭା ବଢ଼ାଇବା ସହିତ ମୃତ୍ତିକା କ୍ଷୟରୁ ଜମିକୁ ରକ୍ଷା କରିବାର ଦେଖାଯାଏ । ଉଚ୍ଚ, ଢିପ, ଲୁଣା ଚଟାଣମାନଙ୍କରେ ସାଲିକୋର୍ଣ୍ଣିଆ (Salicornia bractieta) ଗରିଆ ଶାଗ (Sweeda mudiflora) (Suaeda maritaima) ବୁଦାସବୁ ଦେଖିବାକୁ ମିଳନ୍ତି । ଏହିପରି ବୈଚିତ୍ର୍ୟପୂର୍ଣ୍ଣ ମଙ୍ଗଳ- ଜୈବ-ମଣ୍ଡଳ କେତେ ଆମ ଓଡ଼ିଶାରେ ଅଛି, ତାହାର ସଠିକ୍ ବିବରଣୀ କୌଣସି ସୂତ୍ରରୁ ପାଇବା ପ୍ରକୃତପକ୍ଷେ କଷ୍ଟ ।

ମୁହାଣ, ନଦୀ, ନାଳ ଏବଂ ଖାରିଆ ପାଣି ମାଡୁଥିବା ପାର୍ଶ୍ୱବର୍ତ୍ତୀ ଢାଲୁ ସ୍ଥାନମାନଙ୍କରେ ଏକ ଭିନ୍ନ ଜୀବ- କୈନ୍ଦ୍ରିକ- ପରିବେଶ ବ୍ୟବସ୍ଥା ବାବାଇକୋସିଷ୍ଟମ୍ (Eco-system) ସୃଷ୍ଟି ହୋଇ ଉପକୂଳକୁ ମୃତ୍ତିକା କ୍ଷୟରୁ ରକ୍ଷା କରିବା ସହିତ ନୂତନ ପଠା ସୃଷ୍ଟି ହେବାକୁ ପର୍ଯ୍ୟାପ୍ତ ସୁଯୋଗ ମିଳିଥାଏ । ଏହି ମଙ୍ଗଳ ଜୀବ-କୈନ୍ଦ୍ରିକ ପରିବେଶ ବ୍ୟବସ୍ଥାରେ ଜୁଆରିଆ ପାଣି ମାଡୁଥିବା-ଛାଡୁଥିବା ଅର୍ଥାତ ଜଳ ପ୍ଲାବନ ବ୍ୟବସ୍ଥା (In undation) ଠିକ୍ ରୂପେ କାର୍ଯ୍ୟକାରୀ ହୋଇ ଜନ୍ମୁଥିବା ଉଦ୍ଭିଦମାନଙ୍କ ଦ୍ୱାରା ନିୟନ୍ତ୍ରଣାଧୀନ ରହିଥାଏ । ଏଣୁ ଏହି ଉଦ୍ଭିଦମାନେ ଅଚିରେ ଏକ ସୁସ୍ଥ ପାରମ୍ପରିକ ଉଦ୍ଭିଦ ବସ୍ତି ସୃଷ୍ଟି କରିଥାନ୍ତି । ସେସବୁ ଉଦ୍ଭିଦ ବସ୍ତି ଅଞ୍ଚଳ ହେଲା :

**ଅଧିକ ଲୁଣିପାଣି ବସ୍ତି ଅଞ୍ଚଳ :** ଗୁଆଁ ( Excoecaria agalocha) ସୁନ୍ଦରୀ (Heritiera fomes) ବନ୍ଦରୀ (Bruquiera gymnorhiza) . ଇତ୍ୟାଦି ।

**ଖାରିଆ ପାଣି ବସ୍ତି ଅଞ୍ଚଳ :** କେରୁଆଁ (Sonneratia opetala) ଗୁଆଁ (Excoecaria aqallocha) କେରୁଆଁ (Xylocarpus mekongensis) ଗରାଣି (Ceriops decandra), ସୁନ୍ଦରୀ (Heritiera fomes) ସିଙ୍ଗାଳବନୀ Avicennia marina) ଇତ୍ୟାଦି ।

**ମଧୁର ପାଣି ଅଞ୍ଚଳ :** ବନୀ (Avicennia officinalis), ଗୁଆଁ (Excoecaria agalochae) ସୁନ୍ଦରୀ (Heritierafomes) ଓରୁଅ (Sonneratia griffithe) ଓରା (Snneratia alba) ଧଳାବନୀ (Avecennia alba) କାଳିଆବୂଆ (Bruguiera parviflora), ବନ୍ଦରି (Bruguiera cylendrica), ବଣରୁଅ (Aegialitis rotindifolia), କିରିପା ବାଚୁରନ୍ଦା (Lumnitzera racemosa) ପ୍ରଭୃତି । ଏମାନଙ୍କ ସଂଗଠିତ ଉଦ୍ୟମ ଏହି ଭୂଖଣ୍ଡରେ ଏକ ଜୀବ-ଜଳବାୟୁର ସୂତ୍ରପାତ

କରିଥାଏ । ଏହି ସବୁ ଉଦ୍ଭିଦମାନଙ୍କର ପତ୍ରରେ ଜଳ ସଂରକ୍ଷଣ କ୍ଷମତା ଥିବାବେଳେ, ଲୁଣା ମୃତ୍ତିକା ଏବଂ ଲୁଣାଜଳରେ ତିଷ୍ଠି ରହିବାର ଦକ୍ଷତା ଏମାନଙ୍କର ରହିଛି । ଏଣୁ ଏମାନେ ପ୍ରତ୍ୟେକ ଗୋଟିଏ ଗୋଟିଏ ମଙ୍ଗଳ ଜୀବ ଜଳବାୟୁର ଓ ମଙ୍ଗଳ ଜୀବ ମଣ୍ଡଳର ଅଂଶୀଦାର ।

ପ୍ରକୃତିର ବୈଚିତ୍ର୍ୟତା ଏଠାରେ ଦେଖିବାକୁ ମିଳେ । ରାଇ ପରିବାର (Rhizophoraceal)ର ରାଇ, ବନ୍ଦରି, କାଳିଆଚୁଆ, ଗରାଣି, ସିନ୍ଦୁକା ପ୍ରଭୃତି ବୃକ୍ଷର ବ୍ୟଂୟବ୍ୟଚେର, ସ୍ତମ୍ଭଚେର ଏବଂ ଠେସଚେରି ବୃକ୍ଷମୂଳର ଚତୁପାର୍ଶ୍ୱରେ ରହି ବୃକ୍ଷକୁ ଶକ୍ତ କରିବା ଏବଂ ଅଗଭୀର ମୃତ୍ତିକାରେ ବୃକ୍ଷର ଭାରସାମ୍ୟ ରକ୍ଷା କରିବା ସହିତ ଅଣୁ-ଜୀବଜଗତ ସୃଷ୍ଟି କରିବାକୁ ସକ୍ଷମ ହୁଅନ୍ତି । ସେହିପରି ଆଭିସେନିଆ (Avicenniaceae) ପରିବାରର ବନୀ, ଧଳା ବନୀ, କଳାବନୀ, ସିଙ୍ଗାଳ ବନୀମାନଙ୍କର ଅନେକ ଶ୍ୱାସ ଚେର (Pneumatophore) ଭୂମି ଉପରେ ଥାଇ ବୃକ୍ଷକୁ ଅମ୍ଳଜାନ ଯୋଗାଇବା ସହିତ ଭୂମି ଉପରେ ଏବଂ ଭୂମି ମଧ୍ୟରେ ଅନ୍ୟ ଚେରମାନଙ୍କ ସହିତ ଯୋଗଦେଇ ଏକ ସମ୍ମିଳିତ ଚେର-ଜାଲ ସୃଷ୍ଟି କରନ୍ତି । ଏହି ପ୍ରକୃତିକୃତ ଚେର-ଜାଲ ଏକ ଅଦ୍ଭୁତ ଜୀବ- ପରିବେଶ ସୃଷ୍ଟି କରି ଶିଉଳି, ପରାଗପୁଷ୍ପ (Sponge), ଶାମୁକା, ଅନେକ ପ୍ରକାରର ମାଛ, ବାଗଦା ଚୁଙ୍ଗୁଡ଼, ଚୁଙ୍ଗୁଡ଼ି, କଙ୍କଡ଼ା, ଲୋମଶ ଜୀବ (Chaetopod) ଇତ୍ୟାଦି ଅନେକ କିସମର ପ୍ରାଣୀ ସୃଷ୍ଟି କରେ । ଭିନ୍ନ ଭିନ୍ନ ବୃକ୍ଷମାନଙ୍କରୁ ଉଦ୍ଭିଦର ଅଂଶ ଝଡ଼ି ଏବଂ ଏହି ପ୍ରାଣୀମାନଙ୍କ ପ୍ରାଣୀ ତାତ୍ତ୍ୱିକ ପ୍ରକ୍ରିୟା ଦ୍ୱାରା ଏକ ଉନ୍ନତମାନର ଆକର୍ଷଣୀୟ ଜୀବ-ପରିବେଶ ଏବଂ ଜୀବ-ଜଳବାୟୁ ମାଛ ଏବଂ ଅମେରୁଦଣ୍ଡି ପ୍ରାଣୀ ମାନଙ୍କ ପାଇଁ ସୃଷ୍ଟି କରେ । ଏପ୍ରକାର ଜୀବ-ଯୌଗିକ ଏବଂ ଜୀବ ରସାୟନିକ ପ୍ରକ୍ରିୟା ଦ୍ୱାରା ଉନ୍ନତିରୁ ଉନ୍ନତତର ମାନର ଜୀବ ଭୌଗୋଳିକ ପରିବେଶ ସୃଷ୍ଟି ହୋଇ୍ ହଜାର ହଜାର କିଲୋମିଟର ଦୂରରୁ ପ୍ରବାସୀ ପକ୍ଷୀ, ଓଲିଭ ରିଡ୍ଲେ ସାମୁଦ୍ରିକ କଇଁଛ (Olive Ridley Sea Turle) କେବଳ ଅଣ୍ଡା ଦେବାକୁ ନୁହେଁ, ଅଣ୍ଡା ଦେବା ପୂର୍ବରୁ ଉପଯୁକ୍ତ ଖାଦ୍ୟ ପାଇଁ ଆକୃଷ୍ଟ ହୋଇ ଏଠାକୁ ଆସିଥାନ୍ତି । ଏହା ସହିତ ବଉଳା କୁମ୍ଭୀରର ସାଂସାରିକ ଜୀବନ ପାଇଁ ମଙ୍ଗଳ ପରିବେଶ ମଧ୍ୟ ଅତି ଉତ୍କୃଷ୍ଟମାନର କର୍ମକ୍ଷେତ୍ର ସୃଷ୍ଟି କରେ । ପ୍ରଶାନ୍ତ ମହାସାଗର ପ୍ରାଣୀ ଓଲିଭ ରିଡ୍ଲେ ସାମୁଦ୍ରିକ କଇଁଛର ଅଣ୍ଡାଡ଼ିଶାଳ ପାଇଁ ଓଡ଼ିଶାର ଉପକୂଳ ଆଜି ବିଶ୍ୱବିଖ୍ୟାତ ।

## ଆମ ପ୍ରତି ପ୍ରକୃତିର ବିଦ୍ରୂପ

କିନ୍ତୁ ଏହି ଉନ୍ନତ ବିଶ୍ୱବିଖ୍ୟାତ ଜୀବ-ଭୌଗୋଳିକ ଜଳବାୟୁ ଏବେ ରୁଗ୍‌ଣ (Sick zoo-Geographic climate) ଅବସ୍ଥାରେ ଆସି ପହଞ୍ଚିଛି । (ଏହାପୂର୍ବରୁ ମୋର ଚୁଙ୍ଗୁଡ଼ି ଓ କଇଁଛ ଶୀର୍ଷକ ସମ୍ବାଦଟି 'ସମାଜ'ରେ ୧୯୯୯ ମସିହା ଗତ ଜୁନ ୪ ତାରିଖରେ 'ମତାମତ ପାଇଁ ସମ୍ପାଦକ ଦାୟୀ ନୁହନ୍ତି' ସ୍ତମ୍ଭରେ ବାହାରିଥିଲା ।) ଚୁଙ୍ଗୁଡ଼ି ଓ କଇଁଛ ମଧ୍ୟରେ ଥିବା ଜୀବତାତ୍ତ୍ୱିକ ବିନିମୟାତ୍ମକ ସମ୍ବନ୍ଧ ହିଁ ଓଲିଭ-ରିଡ୍ଲେ କଇଁଛଙ୍କୁ ସମୁଦ୍ରର ହଜାର ହଜାର ମାଇଲ ଦୂରରୁ ଏହି ଉପକୂଳକୁ ଆକୃଷ୍ଟ କରିଥାଏ । ଏହି ଜୀବ କୈନ୍ଦ୍ରିକ ଅନୁଷ୍ଠାନରେ କଇଁଛ ଚୁଙ୍ଗୁଡ଼ିକୁ ଖାଦ୍ୟରୂପେ ପାଉଥିବାବେଳେ, ଚୁଙ୍ଗୁଡ଼ିର ସଂଖ୍ୟାରେ ନିୟନ୍ତ୍ରଣ ରକ୍ଷା କରୁଥିବା କଇଁଛ ଶହଶହ ବର୍ଷ ପୂର୍ବରୁ ସୃଷ୍ଟି କରିଥିବା କଚ୍ଛପ-ଚିଙ୍ଗୁଡ଼ି-ଜୀବମଣ୍ଡଳ ବା (Turtle- shrimp- Bio-sphre) ଯାହାକି ସେଠାକାର ସମ୍ପୂର୍ଣ୍ଣ ପ୍ରାଣୀ ଓ ଉଦ୍ଭିଦ ଜଗତର ପ୍ରତ୍ୟେକ ଜୀବ ଶିଳ୍ପୀଙ୍କ ଅବଦାନରେ ଗଢ଼ି ଉଠିଥାଏ । ଏହି ମଣ୍ଡଳରୁ ଗୋଟିଏ ଅଙ୍ଗ ନଷ୍ଟ ହୋଇଗଲେ ସମୁଦାୟ ମଣ୍ଡଳଟି ଲୋପ ପାଇଯିବ । ଏଠାରେ ଥିବା ଦୁର୍ଲଭ ସ୍ୱତନ୍ତ୍ରତା ପୂର୍ଣ୍ଣ ଖାଦ୍ୟ ଜାଲ ଯାହାକି (Foodweb) ଭାବେ ପରିଚିତ । ଏହା ସେଠାକାର ସ୍ଥାନୀୟ ଜୀବଜଗତରେ ଥିବା ପ୍ରତ୍ୟେକ ଅଂଶୀଦାରମାନଙ୍କ ଦ୍ୱାରା ହିଁ ସମ୍ଭବପର ।

ଉପକୂଳବର୍ତ୍ତୀ ମନୁଷ୍ୟ ଏହି ଜୀବମଣ୍ଡଳର ଅଂଶୀଦାର ହୋଇ ନିଜର ନିରଙ୍କୁଶ ସୁରକ୍ଷା ଲାଭ କରି ଆସୁଥିଲା, ଯେପର୍ଯ୍ୟନ୍ତ ସେ ଏହି ପ୍ରାଣୀ ଭୌଗୋଳିକ ଭୂଖଣ୍ଡର ସୁରକ୍ଷା ପ୍ରତି ଧ୍ୟାନ ଦେଇ ଆସୁଥିଲା । ପ୍ରତ୍ୟକ୍ଷଭାବେ ଉପକୂଳବର୍ତ୍ତୀ ମଙ୍ଗଳ ବନମଣ୍ଡଳ ଆଶ୍ରୟ ବଳୟ ବା ସୁରକ୍ଷା ବଳୟ (Shelter-Belt) ଭାବେ କାର୍ଯ୍ୟ କରେ, ଯାହା ମନୁଷ୍ୟ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବେ ଅନୁଭବ କରେ, କିନ୍ତୁ ଏବେ ଜୀର୍ଣ୍ଣ-ଉପକୂଳ ମଙ୍ଗଳ-ବନମଣ୍ଡଳ ମନୁଷ୍ୟକୁ ସୁରକ୍ଷା ଯୋଗାଇବାକୁ ଅକ୍ଷମ, ଯାହା ମନୁଷ୍ୟ ନିଜ ହାତରେ ହରାଇ ବସିଛି । ଉପକୂଳବର୍ତ୍ତୀ ବନମଣ୍ଡଳ କିପରି ସୁରକ୍ଷା ବଳୟ ରୂପେ ପ୍ରତ୍ୟକ୍ଷ ଭାବେ କାର୍ଯ୍ୟ କରେ, ତାହାର ପ୍ରାମାଣିକ ଚିତ୍ର ଏଠାରେ ପ୍ରଦାନ କରୁଅଛୁ ।

ସମୁଦ୍ରବକ୍ଷରେ ଲଘୁଚାପ ଜନିତ ବାୟୁ କେନ୍ଦ୍ରିଭୂତ ହୋଇ ଭୂପୃଷ୍ଠକୁ ପ୍ରବାହିତ ହେଲେ, ଝଡ଼ ବାତ୍ୟାର ସୂତ୍ରପାତ ହୁଏ । ଏହାର ତୀବ୍ରତା ସମୁଦ୍ର ଆକାଶରେ କେନ୍ଦ୍ରୀଭୂତ ବାୟୁର ଆକାର ଉପରେ ନିର୍ଭର କରେ ।

ଏହି ଦ୍ରୁତ ପ୍ରବାହିତ ବାୟୁ ଯଦି ତାହାର ଗତିପଥରେ ବନ-ବଳୟ ସମ୍ମୁଖୀନ ହୁଏ, ତାହାଲେ ବାୟୁ ରବେଗ ହ୍ରାସ ହେବା ସଙ୍ଗେ ସଙ୍ଗେ ଉର୍ଦ୍ଧ୍ୱଗାମୀ ହେବାକୁ ଲାଗେ ।

ବନବଳୟର ବାୟୁରୋଧ ଶକ୍ତି, ବନବଳୟର ପ୍ରଶସ୍ତତା, ଉଚ୍ଚତା ଏବଂ ଘନତା ବା ନିବିଡ଼ତା ଉପରେ ହିଁ ନିର୍ଭର କରେ । ଉପଯୁକ୍ତ ପ୍ରତିବନ୍ଧକ ପାଇଲେ ବନବଳୟ ଅତିକ୍ରମ କଲାବେଳକୁ ବାୟୁର ବେଗ ଦୁଇ ତୃତୀୟାଂଶ ହ୍ରାସ ପାଏ ।

ବାୟୁ ପ୍ରବାହିତ ବିପରିତ ଦିଗ (Leeward-side) ରେ ବନବଳୟ ବା ବନ ସୁରୀକ୍ଷା ବଳୟ ତାହାର ଉଚ୍ଚତାର କୋଡ଼ିଏ ଗୁଣ ପର୍ଯ୍ୟନ୍ତ ପ୍ରଶସ୍ତ ଅଞ୍ଚଳକୁ ସୁରକ୍ଷା ପ୍ରଦାନ କରେ । ଏବଂ ବନବଳୟ ଅତିକ୍ରମ କଲାବେଳକୁ ପ୍ରବାହିତ ବାୟୁସ୍ରୋତ ଦୁର୍ବଳ ହୋଇପଡ଼େ ଓ କୌଣସି କ୍ଷତି କରିବା ପରିସ୍ଥିତିରେ ନଥାଏ । ପ୍ରକୃତି କୌଣସି ଗାଣିତିକ ସୂତ୍ରରେ କାର୍ଯ୍ୟ ନକଲେ ମଧ୍ୟ ଏକଥା ନିଶ୍ଚିତ ଅରଣ୍ୟ ବାତ୍ୟାକୁ ସମ୍ମୁଖୀନ ହୁଏ ଏବଂ ବାତ୍ୟାର ଗତିରୋଧ ଘଟାଏ । ଏହାସହିତ ଭୂଭାଗରେ ଲଘୁଚାପ ବଳୟ ସୃଷ୍ଟି ହେବାକୁ ଦିଏ ନାହିଁ । ଘୂର୍ଣ୍ଣିବାତ୍ୟାର ଭୟରୁ ଜୀବଜଗତକୁ ମୁକ୍ତ କରେ ।

ପ୍ରକୃତିଦତ୍ତ ଏହି ବ୍ୟବସ୍ଥା କୁଜଙ୍ଗ ଏବଂ କନିକା ପୂର୍ବ ଜମିଦାରୀ ଅଞ୍ଚଳରେ ସୁରକ୍ଷିତ ଥିଲା, ଯେ ପର୍ଯ୍ୟନ୍ତ ବଙ୍ଗଳାଦେଶର ଶରଣାର୍ଥୀମାନଙ୍କୁ ଏହି ଅଞ୍ଚଳର ଲୁଣା ଜଙ୍ଗଲରେ ଥଇଥାନ କରାଯାଇ ନଥିଲା । ଯେଉଁଦିନଠାରୁ ଏମାନଙ୍କୁ ଏହି ଅଞ୍ଚଳରେ ସଂସ୍ଥାପନ କରାଗଲା, ସେହିଦିନଠାରୁ ଏହି ଉପକୂଳ ଲୁଣା ଜଙ୍ଗଲର ଦୁର୍ଦ୍ଦିନ ଆସିଗଲା । ବଙ୍ଗଳାଦେଶ ଶରଣାର୍ଥୀମାନେ ଜୁଆରିଆ ଅଞ୍ଚଳର ଏକ ଦକ୍ଷ ଅଧିବାସୀ । ଯେଉଁମାନେ ଲୁଣା ଜମିକୁ ଫଳପ୍ରସୁ କରିବାରେ ଅତି ଧୁରନ୍ଧର । ସେମାନେ ଏହି ଅଞ୍ଚଳରେ ଥଇଥାନ ହେବା ପରେ ସେମାନଙ୍କ ସଂଖ୍ୟା ବଢ଼ିଲା ଓ ଜମିର ଚାହିଦା ମଧ୍ୟେ ବଢ଼ି ବଢ଼ି ଚାଲିଲା । ରାଜନୈତିକ ବାହୁଛାୟା ତଳେ ସେମାନେ ଜଙ୍ଗଲ ଅଧିକାର କରିବାରେ ଲାଗିଲେ, ଏବଂ ଜଙ୍ଗଲର ଅବକ୍ଷୟ ହେବାରେ ଲାଗିଲା । ସେହି ସମୟରେ ଲୁଣା ଜଙ୍ଗଲ ସବୁ ଜମିଦାରି ଉଚ୍ଛେଦ ପରେ ରାଜସ୍ୱ ବିଭାଗ ଅଧୀନରେ ଥିଲା । ଏସମ୍ବନ୍ଧରେ ପୂର୍ବତନ ନିର୍ବାଚନ ଆୟୁକ୍ତ ଜି.ଭି.ଜି. କୃଷ୍ଣମୂର୍ତ୍ତିଙ୍କ ସତ୍ୟର ପରିପ୍ରକାଶ ସମାଜରେ ଗତ ୨୫-୧୦-୯୯ରେ 'ବଙ୍ଗଳାଦେଶ ଅଧିବାସୀଙ୍କ ବେଆଇନ ଭୋଟଦାନ ଘେନି କୃଷ୍ଣମୂର୍ତ୍ତି ଉଦ୍‌ବେଗ' ଶୀର୍ଷକ ସମ୍ବାଦ ପ୍ରକାଶ ପାଇଛି । ଏହା କେବଳ ଆସାମ, ପଶ୍ଚିମବଙ୍ଗ, ବିହାର କାହିଁକି ଓଡ଼ିଶାରେ ମଧ୍ୟ ଘଟିନୀହିଁ ଏହା କହି ହେବ ନାହିଁ । ଆମ ଗଣତାନ୍ତ୍ରିକ ନକ୍ସାରେ ବହୁ ମୂଷା ରହିଛନ୍ତି । ଏଣୁ କୃଷ୍ଣମୂର୍ତ୍ତି କହିବା ଯଥାର୍ଥ 'ଚୌକିଦାର ଚୋରି କରେ ତୋ କିସକୀ ଜମିଦାରୀ ହେଁ' । ଯାହା ଖୋଦ୍ ଆମ କେନ୍ଦ୍ର ସରକାର କରିପାରିବେ

ନାହିଁ ତାହା ଆମ ଗଣତାନ୍ତ୍ରିକ ମୂଷିକ କରିବାକୁ ସମର୍ଥ । ତାପରେ ୧୯୬୦/୬୧ରେ ଆସିଲା ପାରାଦୀପ ବନ୍ଦର, ସେଥିପାଇଁ ଲୁଣା ଜଙ୍ଗଲରୁ ହରାଇବାକୁ ହେଲା, ସାତ ହଜାର ଏକର । ସବୁଠୁ ଦୁଃଖଦ ବିଷୟ ହେଲା ଚିଙ୍ଗୁଡ଼ି ଚାଷ । ଯାହାପାଇଁ ସ୍ୱୀକୃତି ଓ ଅସ୍ୱୀକୃତି ପ୍ରାପ୍ତ ବହୁ ଜଙ୍ଗଲ ଜମି ଦଖଲ ହେଲା ଏବଂ ଚିଙ୍ଗୁଡ଼ି ଚାଷ ନିର୍ବିବେକ ଭାବେ ଚାଲିଲା ଉପକୂଳବାସୀଙ୍କ ଭବିଷ୍ୟତକୁ ଉପେକ୍ଷା କରି । ଏହା ଯେ କେବଳ କୁଜଙ୍ଗ ଓ କନିକା ପୂର୍ବ ଜମିଦାରୀ ଅଞ୍ଚଳରେ ଘଟିଛି, ତା'ନୁହେଁ, ଏହି ଅବସ୍ଥା ଊଣା ଅଧିକେ ପ୍ରାୟ ସବୁ ଲୁଣା ଜଙ୍ଗଲରେ ଘଟିଛି । ସରକାରୀ ସ୍ତରରେ ଆମର ମୋଟ ଲୁଣା ଜଙ୍ଗଲ ମଧ୍ୟରୁ କେତେ ସ୍ୱୀକୃତିପ୍ରାପ୍ତ ଆବାଦ, କେତେ ଅନାବାଦ ଓ କେତେ ଜଙ୍ଗଲ ଜମିରେ ପ୍ରକୃତ ଲୁଣା ଜଙ୍ଗଲ ରହିଛି ଓ କେତେ ଜମରେ ଜଙ୍ଗଲ ନାହିଁ, ଏହାର ସଠିକ ବିବରଣୀ ମିଳିବା କଷ୍ଟ । ଏବେ ଚତୁର୍ଦ୍ଦିଗରେ ପରିବେଶ ସୁରକ୍ଷାର ସ୍ଲୋଗାନ ଅହରହ ଶୁଣାଯାଉଥିବାବେଳେ ପ୍ରକୃତ ପ୍ରକୃତିକୃତ ପରିବେଶକୁ ବିକୃତ କରି ମଣିଷ ଝଡ଼, ବାତ୍ୟା ପରି ବିଭୀଷିକା ମୟ କରାଳକୁ ଆମନ୍ତ୍ରଣ କରିଛି ଏବଂ ଉପକୂଳବର୍ତ୍ତୀ ଅଧିବାସୀଙ୍କୁ କରାଳର ବଳୟ ମଧ୍ୟକୁ ଠେଲି ଦେଉଛି । ଓଡ଼ିଶାରେ ବହୁ ପରିବେଶବିତ୍, ପ୍ରକୃତିବିତ୍, ସମାଜସେବୀ, ଚେତନଶୀଳ ଏବଂ ବୁଦ୍ଧିଜୀବୀ ଥିଲେ ମଧ୍ୟ ଏହାର ଗତିରୋଧ କରିପାରି ନାହାନ୍ତି । ଏହି ଅସନ୍ତୁଳିତ ପରିବେଶରୁ ଉପକୂଳବର୍ତ୍ତୀ ଅଧିବାସୀଙ୍କୁ ରକ୍ଷା କରିବା ପାଇଁ ଅନେକ ଆଳରେ କୋଟି କୋଟି ଟଙ୍କାର ବୃକ୍ଷରୋପଣ ବିଭିନ୍ନ ସରକାରୀ ଏବଂ ବେସରକାରୀ ସଂସ୍ଥା ମାଧ୍ୟମରେ ହୋଇଛି ଏବଂ ଚାଲୁଛି ମଧ୍ୟ । କିନ୍ତୁ ପୁରୀ, କୋଣାର୍କ ବେଳାଭୂମି ବ୍ୟତୀତ ବୃକ୍ଷରୋପଣ କାର୍ଯ୍ୟ ଆଶାଜନକ ସାଫଲ୍ୟତା ହାସଲ କରିଥିବା ନଜିର ଖୁବ୍ କମ୍ ସ୍ଥାନରେ ଦେଖିବାକୁ ମିଳେ । ଏହାର କାରଣ ବୃକ୍ଷରୋପଣ ସଂସ୍ଥାମାନେ ସ୍ଥାନୀୟ ଅଧିବାସୀଙ୍କ ପାଖରେ ଉତ୍ତରଦାୟୀ ନୁହଁନ୍ତି । ଅଧିବାସୀଙ୍କର ହକ୍‌ନାହିଁ ତାଙ୍କ ଅଞ୍ଚଳରେ କେତେ ସରକାରୀ ଅର୍ଥ ବ୍ୟୟ ହେଲା ଓ ତାହାର ପରିଣାମ ଜାଣିବାକୁ । ଆମର ମଧ୍ୟ ସଚେତନତା ଏଥିପ୍ରତି ଆଦୌ ନାହିଁ କହିଲେ ଚଳେ, ଏଣୁ ଆମ ଦୁର୍ଦ୍ଦଶାର ବଳୟ ମଜଭୁତ ହେବା ସଙ୍ଗେ ସଙ୍ଗେ ଆମେ ଲାଘବର ଆଶା ହରେଇ ବସୁଛୁ ।

ସମୁଦ୍ର ଜୁଆର ପାଣି ମାଡୁଥିବା ଅଞ୍ଚଳ, ନୂତନ ଭାବେ ଗଢ଼ି ଉଠୁଥିବା ପଠା, ଜୁଆରିଆ ନଦୀଖଣ୍ଡି, ରୁଗ୍‌ଣ ଜଙ୍ଗଲ ଭୂମି, ବିଶେଷକରି ପୂର୍ବରୁ, ଚିଙ୍ଗୁଡ଼ି ଚାଷ ହେଉଥିବା ଅଞ୍ଚଳରେ ବୃକ୍ଷରୋପଣ ମାଧ୍ୟମରେ ନୂତନ ଜଙ୍ଗଲ ସୃଷ୍ଟି କରିବା ନିଶ୍ଚିତ

ଭାବେ କଷ୍ଟ ସମ୍ପୂର୍ଣ୍ଣ, କିନ୍ତୁ ଦକ୍ଷତାର ସହିତ ଏହି କାର୍ଯ୍ୟ କରାଯାଇ ପାରିବ, ଯଦି ନିଷ୍ଠାକୁ ପ୍ରାଧାନ୍ୟ ଦିଆଯାଏ । ବିଶ୍ୱର ସବୁଠାରୁ ଉତ୍କୃଷ୍ଟ ଧରଣର ବୃକ୍ଷରୋପଣ କାର୍ଯ୍ୟ ହେଉଛି ବଙ୍ଗଳାଦେଶର ସୁନ୍ଦର ବନରେ, କାରଣ ସେମାନେ ବହୁବାର ଶିକାର ହୋଇଛନ୍ତି ପ୍ରାକୃତିକ ବିପର୍ଯ୍ୟୟର । ବିଶ୍ୱର ବହୁ ଅନୁଷ୍ଠାନ ଏଥିରେ ସଂପୃକ୍ତ ଅଛନ୍ତି । ବିଶ୍ୱ ଖାଦ୍ୟ କୃଷି ଅନୁଷ୍ଠାନ (FAO) ଏଥିରେ ସହଯୋଗ କରୁଛନ୍ତି । ବିଗତ ଷାଠିଏ ଦଶକରେ ବଙ୍ଗଳାଦେଶ ବହୁବାର ବାତ୍ୟା ଓ ଜୁଆର ପାଣି ଦେଶମଧ୍ୟକୁ ମାଡ଼ି ଆସିବା ଦାରୁଣ ଦୁର୍ବିପାକରେ ଜର୍ଜରିତ ହୋଇ ଏହି କାର୍ଯ୍ୟରେ ପ୍ରାଧାନ୍ୟ ଦେଇଥିଲା । ଏଥିରେ ବିଶ୍ୱବ୍ୟାଙ୍କ ସହଯୋଗ କରୁଛନ୍ତି । ୧୯୯୧ ରେ ମଧ୍ୟ ଏହି ଧରଣର ବିପର୍ଯ୍ୟୟର ସମ୍ମୁଖୀନ ସେମାନେ ହୋଇ ଚୈତନ୍ୟ ଫେରି ପାଇ ଉଭୟ ଦେଶବାସୀ ଏବଂ ସରକାର ସଂପୃକ୍ତ ହୋଇ ବୃକ୍ଷରୋପଣ କାର୍ଯ୍ୟକୁ ତ୍ୱରାନ୍ୱିତ କରି ଏହି ଉଦ୍ୟମରେ ବିଶ୍ୱରେ ଅଗ୍ରଣୀ ହୋଇପାରିଛନ୍ତି । ସେମାନେ ଆମ ଠାରୁ ନିର୍ଦ୍ଧନ ହେଲେ ମଧ୍ୟ ଲୁଣା ଜଙ୍ଗଲକୁ ଚିଙ୍ଗୁଡ଼ି ଚାଷରେ ଲଗାନ୍ତତି ନାହିଁ । ଏବେ ଆମ୍ଭେ ପନ୍ଦର ଦିନ ବ୍ୟବଧାନରେ ଦୁଇଟି ଭୟଙ୍କରୀ ପ୍ରଳୟର ସମ୍ମୁଖୀନ ହୋଇଥିଲେ ମଧ୍ୟ ଆମ୍ଭର ଚୈତନ୍ୟ ଫେରୁଛି ନା ନାହିଁ ଦେଖିବାର କଥା ।

ଆମ ନିଜ ପଶ୍ଚିମବଙ୍ଗରେ ଥିବା ସୁନ୍ଦରବନରେ ମଧ୍ୟ ଅନୁରୂପ ଲୁଣା ଜଙ୍ଗଲ ବୃକ୍ଷରୋପଣ କାର୍ଯ୍ୟ ସହିତ ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳରେ ବୃକ୍ଷରୋପଣ କାର୍ଯ୍ୟ ନ୍ୟାସନାଲ ଆଫରେଷ୍ଟେସନ ଆଣ୍ଡ ଇକୋ-ଡେପେଲପ୍‌ମେଣ୍ଟ ବୋର୍ଡ଼' (National Afferestation and Eco-Development Board) ସହାୟତାରେ ଯୋରସୋରରେ ଚାଲିଛି । ମୁଁ ଏହି ପ୍ଲାଣ୍ଟେସନ କାର୍ଯ୍ୟ ଅନୁଧ୍ୟାନ କରିବାର ସୁଯୋଗ ପାଇଥିଲି ଏବଂ ତାହାର ଅନୁଧ୍ୟାନ ରିପୋର୍ଟ ଇକୋ ଡେଭେଲପ୍‌ମେଣ୍ଟ ବୋର୍ଡ଼କୁ ପଠାଇଥିଲି । ପଶ୍ଚିମବଙ୍ଗ ସରକାର ଓ ସେଠାକାର ଅଧିବାସୀ ସୁନ୍ଦରବନ ଜଙ୍ଗଲକୁ ଚିଙ୍ଗୁଡ଼ି ଚାଷରେ ବିନିଯୋଗ କରିବାକୁ ଚାହାନ୍ତି ନାହିଁ । ଯେପରି ଭାବେ ଓଡ଼ିଶାର ଲୁଣା ଜଙ୍ଗଲକୁ ବିନିଯୋଗ କରାଯାଉଛି । ପ୍ରକୃତି କୃତ ଜୀବ ପରିବେଶ ବା ଇକୋସିଷ୍ଟମ୍‌ର ଅର୍ଥ ନୁହେଁ ମଣିଷ ସ୍ୱେଚ୍ଛାଚାରୀ ଭାବେ ପ୍ରକୃତି ବିରୋଧୀ କାର୍ଯ୍ୟ କଲେ, ପ୍ରକୃତି ଦ୍ୱାରା କ୍ଷମଣୀୟ ହୋଇପାରିବ । ଆମେ ଗୁଡ଼ାଏ ଭୁଲ ଚିନ୍ତାଧାରାର ବଶବର୍ତ୍ତୀ ହୋଇ ଗୁଡ଼ିଏ ନିରୀହ ଲୋକଙ୍କୁ ଦଣ୍ଡ ମିଳିବାର ସୁଯୋଗ ସୃଷ୍ଟି କରୁଛେ । ଉପକୂଳ ଦାୟାବ ଏହା ବୁଝିପାରିଲେ, ଆମର ସଫେଇ କ'ଣ ହେବ ?

## ଆମ ପ୍ରତି ପ୍ରକୃତିର ବିଦ୍ରୁପ

ସମୁଦ୍ର ବେଳାଭୂମି ବିଶେଷକରି ବେଳାବାଲିରେ ବନୀକରଣ କାର୍ଯ୍ୟ ଲୁଣା ଜଙ୍ଗଲ ଅପେକ୍ଷା ଅପେକ୍ଷାକୃତ ସହଜ । ପୁରୀ, କୋଣାର୍କ ଅଞ୍ଚଳର ଶହ ଶହ ହେକ୍ଟର ଚାଷ ଜମିକୁ ଓ ଜନବସତିକୁ ବାଲିଚରରୁ ରକ୍ଷା କରାଯାଇ ପାରିଛି, କେବଳ ପ୍ଲାଣ୍ଟେସନ ମାଧମରେ । ଏଠାରେ ପ୍ରାଦେଶିକ ଜଙ୍ଗଲ ବିଭାଗର କାର୍ଯ୍ୟ ଅତ୍ୟନ୍ତ ଅଭିନନ୍ଦନୀୟ । ସ୍ଥାନୀୟ ଅଧିବାସୀମାନେ ବନୀକରଣର ସୂତ୍ର ଜଙ୍ଗଲ ମହକୁମା କର୍ମଚାରୀମାନଙ୍କ ଠାରୁ ଶିକ୍ଷାଲାଭ କରି ନିଜ ଜମିରେ ବୃକ୍ଷରୋପଣ କରି ବାୟୁବେଗ ରୋଧକ' ବଳୟ ସୃଷ୍ଟି କରି ନିଜର ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି ଘଟାଇ ନିରାପଦରେ ବସବାସ କରି ଆସୁଅଛନ୍ତି । ଯେଉଁ ଆର୍ଥିକ ସ୍ୱଚ୍ଛଳତା ସରକାର ଦେଇପାର ନଥାନ୍ତେ, ତାହା ଲୋକଙ୍କ ଶିକ୍ଷାରୁ ହିଁ ମିଳିପାରିଛି । ଏବେ ବାହାରୁ ସେଠାକୁ ଲୋକମାନେ ଯାଇ ବାଲିଜମି କିଣି ବୃକ୍ଷ ଚାଷକୁ ସବୁଜ ଶିଳ୍ପ ଭାବେ ଗ୍ରହଣ କରି ଆର୍ଥିକ ସ୍ୱାବଲମ୍ବୀ ହୋଇପାରିଛନ୍ତି । ବେଳାବାଲି ଏବଂ ତୀରବର୍ତ୍ତୀ ବାଲିଚର ଜମିରେ ଝାଉଁ ବା କାଜୁଆରିନା (Casuarina equisetifolia) ପୁଲାଙ୍ଗ, ତାଳ, ନଡ଼ିଆ, ବାଉଁଶ, ଗ୍ରାମ୍ୟ କାଜୁବାଦାମ ଓ କେତେକ କିସମର ୟୁକାଲିପଟାସ ବୃକ୍ଷ ଚାଷ କରାଯାଇପାରିବ । କିନ୍ତୁ ସେଠାରେ ସବୁଠାରୁ ଲାଭଦାୟକ ବୃକ୍ଷ ହେଲା ଝାଉଁ ଯାହାକି କୋଣାର୍କରେ ୧୯୦୫ ସାଲରୁ ଏବଂ ପୁରୀରେ ୧୯୧୬ ସାଲରୁ ଚାଷ କରାଯାଉଅଛି । ପୁରୀ ଜଗନ୍ନାଥ ମନ୍ଦିର ସମସ୍ତ ଜାଳେଣୀ କାଠ ଏହି ରୋପିତ ସରକାରୀ ଜଙ୍ଗଲରୁ ଯୋଗାଇ ଦିଆଯାଇଥାଏ । ଏହା ଏକ ଉପାଦେୟ କାଠ, ବିଶେଷକରି ଗ୍ରାମ୍ୟସ୍ତରରେ ଗୃହ ନିର୍ମାଣ କାର୍ଯ୍ୟରେ ଲାଗିଥାଏ । ପୋଲାଙ୍ଗ କାଠ ଜାଳ ହେବା ସହିତ ଏହାର ଫଳରୁ ମିଳୁଥିବା ତେଲ ଉପକୂଳବର୍ତ୍ତୀ ଲୋକଙ୍କର ଜାଳେଣୀ ତେଲ କଷ୍ଟ ଦୂର କରେ । ଏବେ ଏହି ତେଲ ସାବୁନ ଶିଳ୍ପରେ ଲାଗୁଛି । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଏହି ତେଲକୁ ଉପକୂଳବର୍ତ୍ତୀ ଲୋକମାନେ ଦ୍ୱୀପରେ ଜାଳି କିରୋସିନି ଅଭାବ ଜନିତ କଷ୍ଟ ଲାଘବ କରିପାରୁଥିଲେ । ଝାଉଁ, ପୋଲାଙ୍ଗ, ତାଳ, ନଡ଼ିଆ, ବାଉଁଶ ପ୍ରତ୍ୟେକ ଗରିବର ଆର୍ଥିକ ସ୍ୱଚ୍ଛଳତା ରକ୍ଷା କରୁଥିବାବେଳେ, କାଜୁ ବଡ଼ଲୋକ ମାନଙ୍କର ଖାଦ୍ୟ ହୋଇଥାଏ । ଏହିସବୁ ଉଦ୍ଭିଦ ଗାନ୍ଧିଜୀଙ୍କ କୁଟୀର ଶିଳ୍ପକୁ ପ୍ରୋତ୍ସାହିତ କରେ । ଯେଉଁ ଶିଳ୍ପ ତୃଣ ମୂଳ (Grass-Root) ସ୍ତରରୁ ଆର୍ଥିକ ସ୍ୱଚ୍ଛଳତା ଦେଇପାରିବ, ସେହି ଶିଳ୍ପ ହିଁ ଉପକୂଳବର୍ତ୍ତୀ ଲୋକଙ୍କ ପାଇଁ ପ୍ରଯୋଜ୍ୟ ।

ଏହିସବୁ ସମସ୍ୟାକୁ ତର୍ଜମା କଲେ ଉପକୂଳବର୍ତ୍ତୀ ଅଞ୍ଚଳରୁ ଲୁଣା ଜଙ୍ଗଲ ଯେପରି ଦ୍ରୁତ ଗତିରେ ଲୋପ ପାଇବାରେ ଲାଗିଛି ଏବଂ ନୂତନ ଜଙ୍ଗଲ ସୃଷ୍ଟି କରିବାରେ ଯେପରି ସବୁସ୍ତରରେ ଅକ୍ଷମତା ପ୍ରକାଶ ପାଇଛି, ଉପକୂଳ ଲୋକଙ୍କ ପାଇଁ ଦୁର୍ଦ୍ଦିନର ଯେ ଘନ ବାଦଲ ସବୁ ସମୟରେ ଢାଙ୍କି ହୋଇ ରହିଛି, ଏଥିରେ ଦ୍ୱିରୁକ୍ତି ହେବାର ନାହିଁ । ଆମ ରାଜନୈତିକ ବ୍ୟାଟ୍‌ସମ୍ୟାନମାନଙ୍କର ଅଭାବ ମୋଟେ ନାହିଁ, ଯେଉଁମାନେ ଆକାଶମାର୍ଗରୁ ବାଇନାକୁଲର ସାହାଯ୍ୟରେ ଆମ ଦୁଃଖ ଦୁର୍ଦ୍ଦଶାକୁ ଉପଲବ୍ଧ କରି ଆର୍ଥିକ ଅନୁଦାନ ଆଣି ଦେଇ ପାରିବେ, କିନ୍ତୁ ଆମର ରାଜନୈତିକ ବୋଲରଙ୍କର ଅଭାବ ରହିଛି ଯେଉଁମାନେ ଆମ ଦୁଃଖ ଦୁର୍ଦ୍ଦଶାକୁ ମାକ୍ରୋସ୍କୋପ୍ ସାହାଯ୍ୟରେ ଅନୁଧାନ କରି ସବୁ ସମୟ ପାଇଁ ଦୁର୍ଦ୍ଦିନର ଘନବାଦଲକୁ ହଟାଇ ଦେଇପାରିବେ । ତାହା ହିଁ କେବଳ ଆନାସାହେବ ହଜାରେ, ମାଧା ପାଠେକାର ଏବଂ ସୁନ୍ଦରଲାଲ ବହୁଗୁଣାମାନଙ୍କ ପରି ସ୍ୱେଚ୍ଛା ସଚ୍ଚା ସମାଜସେବୀ ବୋଲରଙ୍କ ଦ୍ୱାରା ସମ୍ଭବ ହୋଇପାରିବ ।

ଯେତେବେଳେ ଗଣତନ୍ତ୍ର ଦିଗହରା ହୁଏ ଏବଂ ଲୋକଙ୍କ ଆସ୍ଥାଭାଜନ ହୋଇପାରେ ନାହିଁ, ସେତେବେଳେ ସୈନ୍ୟବାହିନୀର ସହଯୋଗ ଲୋଡ଼ାଯାଏ । ଶୁଣିବାକୁ ଆଶ୍ଚର୍ଯ୍ୟ ଲାଗିବ ଭାରତୀୟ ସୈନ୍ୟ ବାହିନୀରେ 'ଜୀବ ପରିବେଶ କର୍ତ୍ତବ୍ୟ ଶକ୍ତି' ବା (Ecological Task Force) ଗଠନ କରାଯାଇ ସୈନ୍ୟମାନଙ୍କ ଦ୍ୱାରା ବନୀକରଣ କାର୍ଯ୍ୟ କରାଯାଉଅଛି । ୧୯୮୬ରୁ ଏହା ଆନୁଷ୍ଠାନିକ ଭାବେ କାର୍ଯ୍ୟକାରୀ ହୋଇ ଆସୁଅଛି, ଯଦିଓ ଏହି ଚିନ୍ତାଧାରା ୧୯୭୦ର ପ୍ରାରମ୍ଭରୁ ସୈନ୍ୟବାହିନୀରେ ଅନ୍ତର୍ଭୁକ୍ତ କରାଯାଇଥିଲା । ଏହି ଟାସ୍କଫୋର୍ସ ପୂର୍ବ ଆର୍ମି ପ୍ରଧାନ (Chief of Army Staff) ଜେନେରାଲ ଏସ୍.ଏଫ. ରୋଡ୍ରିଗେଓ (S.F. Rodrigue) ଯେତେବେଳେ ମିଲେଟାରୀ ଟ୍ରେନିଂର ଡାଇରେକ୍ଟର ଜେନେରାଲ ଥିଲେ, ସେହି ସମୟରୁ ସୈନ୍ୟବାହିନୀରେ ଏହା ପ୍ରଥମେ କାର୍ଯ୍ୟକାରୀ କରାଗଲା । ଏହା ସହିତ ଜୀବ ବେଷ୍ଟନୀ ପ୍ରକୋଷ୍ଠ (Ecology Cell), ପାଠଚକ୍ର (Semminar) ଏବଂ ପ୍ରକୃତି ଶିବିର (Nature Camp) ଖୋଲାଯାଇ ଭିନ୍ନ ଭିନ୍ନ ସମାବେଶ (Command) ଅଧୀନରେ ପରିବେଶ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେବାକୁ ଲାଗିଲା । ଏଥିପାଇଁ ଯାହା ଖର୍ଚ୍ଚ ହୁଏ ପରିବେଶ ମନ୍ତ୍ରଣାଳୟ ଦ୍ୱାରା ବହନ କରାଯାଏ । ଏହି ଟାସ୍କ ଫୋର୍ସ ମାଧ୍ୟମରେ ଚୋରା ବନ୍ୟ ପଶୁ ଶିକାରୀଙ୍କ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଆଯାଇଥାଏ । ଏ ବିଷୟକ ତାଲିମ ପ୍ରାପ୍ତ

ଉତ୍ସର୍ଗୀକୃତ ଅଫିସରମାନଙ୍କ ଦ୍ୱାରା କର୍ମଚାରୀ ସୃଷ୍ଟି କରାଯାଇ ଏହି ସବୁଜ ପୃଥିବୀ (Green Earth) କାର୍ଯ୍ୟକ୍ରମରେ ନିଯୁକ୍ତି ପାଇଁ ବ୍ୟବସ୍ଥା ରହିଅଛି । ଦେଶର ସୁଦୂର ଦୁର୍ଗମ ସୀମାନ୍ତ ମରୁଭୂମି ମାନଙ୍କରେ ବନୀକରଣ କରିବା ପାଇଁ ଇକୋଲୋଜିକାଲ ବାଟାଲିୟନ୍ (Ecological Battalion) ଆର୍ମିରେ ସୃଷ୍ଟି କରାଯାଇଅଛି । ଏହି ସଂସ୍ଥାରେ ଅନାସାହେବ ହାଜାରେ ହାବିଲଦାର ରୂପେ କାର୍ଯ୍ୟ କରୁଥିଲେ । ସେଠାରୁ ଚାଲି ଆସି ଲୋକମାନଙ୍କ ମଧ୍ୟରେ ଏହି କାର୍ଯ୍ୟକ୍ରମ ଚାଲୁ ରଖି ଆଜି ବିଶ୍ୱଖ୍ୟାତି ଲାଭ କରିଛନ୍ତି । ଆମ ସୈନ୍ୟବାହିନୀର ପ୍ରଗତିଶୀଳ କାର୍ଯ୍ୟ ମଧ୍ୟରୁ କେତେକ ବିଶେଷ ଉଦାହରଣ :

୧୨୭ ଏବଂ ୧୨୮ ପଦାତିକ ବାହିନୀ ଏହି କାର୍ଯ୍ୟକ୍ରମରେ ନିଯୁକ୍ତି ପାଇଁ ଡେରାଡୁନ, ବିକାନିର ଏବଂ ସାମ୍ଭା ପ୍ରଭୃତି ସ୍ଥାନରେ ବୃକ୍ଷରୋପଣ, ଅରଣ୍ୟ ସୁରକ୍ଷା, ମୃତ ବୃକ୍ଷସ୍ଥାନରେ ନୂତନ ବୃକ୍ଷରୋପଣ, ନର୍ସରୀ (ପାଳନୀ)ରେ ନୂତନ ଚାରା ସୃଷ୍ଟି ଇତ୍ୟାଦି ଅନେକ ସାଫଲ୍ୟ କାର୍ଯ୍ୟକ୍ରମର ଅଧିକାରୀ ହୋଇପାରିଛନ୍ତି । ସବୁଜ ପୋଷାକଧାରୀ ସୈନିକ ଏବେ ପ୍ରକୃତିର ସବୁଜିମା ଫେରାଇ ଆଣିବାକୁ ଦୃଢ଼ ପ୍ରତିଜ୍ଞ । ଏହି ପ୍ରତିଜ୍ଞାର ପ୍ରସ୍ତୁତି ସ୍ୱରୂପ ଉତ୍ତର କମାଣ୍ଡ (Northern Command) ଅଧୀନସ୍ଥ ସୈନ୍ୟମାନେ ସେହି ବୃକ୍ଷ ଶୂନ୍ୟ ଅଞ୍ଚଳରେ ଲକ୍ଷ ଲକ୍ଷ ଚାରା ରୋପଣ କରି ନୂତନ ଜଙ୍ଗଲ ସୃଷ୍ଟି କରିବା ସହିତ ପ୍ରତିରକ୍ଷା ବିଭାଗ ଜମିରେ ମଧ୍ୟ ବନୀକରଣ କାର୍ଯ୍ୟ କରୁଛନ୍ତି । ପତିତ ଭୂମି ଉନ୍ନୟନ ବୋର୍ଡ଼ (Waste Land Development Board) ର ଆର୍ଥିକ ସହାୟତାରେ ବୃକ୍ଷରୋପଣ ମାଧ୍ୟମରେ ପତିତ ଜମିର ପୁନରୁଦ୍ଧାର କାର୍ଯ୍ୟ ମଧ୍ୟ କାର୍ଯ୍ୟକାରୀ ହେଉଅଛି । ଏହିସବୁ କାର୍ଯ୍ୟରେ ଜାମ୍ମୁ କାଶ୍ମୀରର ସାମାଜିକ ବନୀକରଣ ସଂସ୍ଥା ଚାରା ଯୋଗାଉଅଛନ୍ତି । ଏହା ସହିତ ସେଠାରେ ପ୍ରତିରକ୍ଷା ବିଭାଗର ପାଳନୀ ବା ନର୍ସରୀ ମଧ୍ୟ କାର୍ଯ୍ୟ କରୁଛି । ଲଦାଖ ସାଞ୍ଚୁରୀ ବା ଅଭୟାରଣ୍ୟ ନିବାସୀ ବିଲୁପ୍ତ ଅବସ୍ଥାକୁ ଆସି ଯାଇଥିବା କଳା ବେକ ବଗ ବା କ୍ରେନ୍‌ର ସୁରକ୍ଷା ଏବଂ ବିଶ୍ୱରେ ଅନ୍ୟ କେଉଁଠି ଦେଖାଯାଉ ନଥିବା କେବଳ କାଶ୍ମୀରର ଡେଚିଗାମ ସାଞ୍ଚୁରୀରେ ମିଳୁଥିବା ବିଲୁପ୍ତ ପ୍ରାୟ ଦୁର୍ଲଭ ଲାଲ ମୃଗ, ହଙ୍ଗୁଲ ମଧ୍ୟ ସୈନ୍ୟମାନଙ୍କ ଦ୍ୱାରା ସୁରକ୍ଷିତ ।

ଏତିକିରେ ଜୀବ-ବେଷ୍ଟନୀ କର୍ତ୍ତବ୍ୟଶୀଳ ସୈନ୍ୟମାନଙ୍କର କାର୍ଯ୍ୟ ସୀମିତ ହୋଇ ରହିବ ନାହିଁ । ପୁନେରେ ଅବଦୁଲ ହମିଦ୍ ପକ୍ଷୀତୀର୍ଥର ୨୦୦ ଏକର ଉପେକ୍ଷିତ ଜମିରେ ସ୍ଥାନୀୟ ବୃକ୍ଷରୋପଣ କରି ପ୍ରକୃତିର ପ୍ରକୃତ ମୂଲ୍ୟବୋଧକୁ ସମ୍ମାନ ଦେଇ ଭାରତୀୟ ସୈନିକ କେବଳ ସମର କିମ୍ବା ଦୁର୍ବିପାକର ଅପେକ୍ଷାରତ ନୁହେଁ ବରଂ ଭଗ୍ନ

ପରିବେଶକୁ ନୂତନତ୍ୱ ଦେଇପାରେ ପ୍ରମାଣ କରାଇ ଦେଇ ପାରିଛି । ଏମାନେ ସବୁଜ ପୋଷାକ ପିନ୍ଧିବା ସହିତ ସବୁଜର ମୂଲ୍ୟବୋଧ ବି ଜାଣନ୍ତି । ଏହାର ପ୍ରମାଣ ସ୍ୱରୂପ ପୁନେର ପିମ୍ପ୍ରି ଚିଞ୍ଚ୍ୱାଡ୍‌ରେ ଦୁଇଲକ୍ଷ ଚାରା ରୋପଣ କରିବା ସୈନିକ ନିଜେ ନିଜର ସ୍ୱାସ୍ଥ୍ୟରକ୍ଷା କରିବା ସହିତ ବାସ କରୁଥବବା ଗ୍ରହର ମଧ ସ୍ୱାସ୍ଥ୍ୟ ରକ୍ଷା କରିପାରେ, ତାହାର ପ୍ରମାଣ କରିବାକୁ ଯାଉଛି ।

ବିଶ୍ୱରେ ଭାରତରେ ଥିବା ଏକ ବୃହତ୍ତର ମରୁଭୂମି ଥର୍‌ରେ ବୃକ୍ଷରୋପଣ କରି ବିଶ୍ୱ ଭୌଗୋଳିକ ରୂପରେଖରେ ପରିବର୍ତ୍ତନ ଆଣିବାରେ ପ୍ରଗାଢ଼ ଉଦ୍ୟମ, ଭାରତ ଜାତୀୟ ପରିବେଶ ସଂରକ୍ଷଣ ନୀତିର ମହାନୀୟତା ରକ୍ଷା କରିବାକୁ ଯାଇ ଭାରତରେ ଥିବା ବିଶ୍ୱ ବନ୍ୟଜୀବ ନିଧି (World Wild Life Fund) ସହାୟତାରେ ଅନେକ ଯୋଜନାକୁ କାର୍ଯ୍ୟକରିବା, ୧୯୯୩-୯୪ରୁ ପର୍ଯ୍ୟାୟକ୍ରମେ ମହାରାଷ୍ଟ୍ରର ଦେଓଲାଲରେ ୧,୭୦୦ ହେକ୍ଟର ଜମିରେ ବୃକ୍ଷରୋପଣ ଯୋଜନା ହାତକୁ ନେବା ଭାରତୀୟ ସୈନିକର ନିଷ୍ଠାର ପରାକାଷ୍ଠା ବ୍ୟତୀତ ଅନ୍ୟ କ'ଣ ହୋଇପାରେ । ଭାରତୀୟ ସୈନିକର ସ୍ୱପ୍ନର ସାକାର ଏତକିରେ ସୀମାବଦ୍ଧ ହୋଇନାହିଁ । ସେ ଦେଖୁଛି ଆହୁରି ଆହୁରି ସ୍ୱପ୍ନ । ଅହମ୍ମଦ ନଗର ଅଞ୍ଚଳରେ ୫୩୧.୨୫ ହେକ୍ଟର ଉଦ୍ଭିଦ ଶୂନ୍ୟ ଅଞ୍ଚଳରେ ବୃକ୍ଷରୋପଣ ଯୋଜନା, ସେହି ଅହମ୍ମଦନଗର କେ.କେ. ରେଞ୍ଜ ଅଧୀନସ୍ଥ ଅଞ୍ଚଳରେ ୧,୫୦୦ ହେକ୍ଟର ଜମିରେ ବନୀକରଣ ପ୍ରସ୍ତାବ, ଗୁରୁଗାଓଁରେ ୩୦୦ ହେକ୍ଟର ଜମିକୁ ବୃକ୍ଷରୋପଣ କରିବାର ପରିକଳ୍ପନା ଏବଂ ଲଦାଖ ପତିତ ଜମିର ବୃକ୍ଷରୋପଣ କରିବାର ପ୍ରୟାସ ଭାରତୀୟ ଜବାନଙ୍କୁ କୃତିତ୍ୱର ଶିଖରରେ ପହଞ୍ଚାଇ ପାରିଛି । ଏହିସବୁ ସବୁଜ ବିପ୍ଳବ ଯାନ୍ତ୍ରିକ ପଦାତିକ ସୈନ୍ୟବଳ କେନ୍ଦ୍ର (Mechanised Infantry Regimental Centre) ଦ୍ୱାରା କାର୍ଯ୍ୟକାରୀ କରାଯାଉଛି ।

ପୂର୍ବତନ ସେନାଧକ୍ଷ ଜେନେରାଲ ବିପିନ୍ ଚନ୍ଦ୍ର ଯୋଶୀ ଭାରତୀୟ ସୈନ୍ୟବାହିନୀରେ ଜୀବ ପରିବେଶ ବନ୍ଧୁତ୍ୱର ଦୃଷ୍ଟିକୋଣ (Eco-friendly look) ସୃଷ୍ଟି କରିପାରିଥିଲେ । ଏହାର ନିଦର୍ଶନ ସ୍ୱରୂପ ସେ ସୈନ୍ୟ ବାହିନୀରେ ଜୀବ ପରିବେଶ ବାହିନୀ (Eco-battalion) ସୃଷ୍ଟି କରି ଉତ୍ତରପ୍ରଦେଶରେ ପିଥୋରଗଡ଼ (କୁମାୟୁନ୍)ର ବୃକ୍ଷଶୂନ୍ୟ ଉପତ୍ୟକାରେ ଜବାନମାନଙ୍କ ଦ୍ୱାରା ବୃକ୍ଷରୋପଣ କରି ଅପହୃତ ସବୁଜିମାକୁ ସେଠାକାର ଅଧିବାସୀଙ୍କୁ ଫେରାଇ ପାରିଥିଲେ । ଶ୍ରୀଯୁକ୍ତ ଯୋଷୀ କୁମାୟୁନ୍‌ର ବାସିନ୍ଦା

ଥିଲେ, ଏବେ ବି ସେଠାକାର ସରଳ ଜଙ୍ଗଲପ୍ରିୟ ଅଧିବାସୀ ଶ୍ରୀ ଯୋଷୀଙ୍କ ଅବଦାନକୁ ଭୁଲିନାହାନ୍ତି ।

ଜେନେରାଲ ଯୋଷୀଙ୍କ ତତ୍ୱାବଧାନରେ ହିମାଳୟରେ ପ୍ରତିରକ୍ଷା ବିଭାଗର ୨୧୦ ଏକର ଜମିରେ ଆୟୁର୍ବେଦ ଔଷଧୀୟ ଗୁଳ୍ମ ଚାଷ କରାଯାଇ ଦ୍ରବ୍ୟଗୁଣ ଚିକିତ୍ସା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିଲା । ରାଣୀକ୍ଷେତ ଠାରେ କରାଯାଇଥବବା ସାଫ୍ରୋନ (Saffron) (Crocussativus) ଚାଷ ସେ ମଧ୍ୟରୁ ଅନ୍ୟତମ । ଲୋକଙ୍କ ମଧ୍ୟରେ ପରିବେଶ ସଚେତନତା ସୃଷ୍ଟି କରିବା ଲକ୍ଷ୍ୟରେ ବିଶ୍ୱବନ୍ୟ ଜୀବନିଧି (World Wild life Fund) ଅନୁଷ୍ଠାନ ସହଯୋଗରେ ଏହି ପଦକ୍ଷେପ ଅତି ନିଷ୍ଠାର ସହି କାର୍ଯ୍ୟକାରୀ କରାଯାଉଥିଲା ଏବଂ ଏବେ ମଧ କରାଯାଉଛି । ଏଣୁ ସବୁଜ ପୋଷାକ ପରିହିତ ଭାରତୀୟ ସୈନିକ ଦେଶର ସବୁଜିମା ରକ୍ଷାର ଶପଥ ନେଇ ପୁନେର କୁରେଗାଓଁର ରଜନୀଶ ଆଶ୍ରମ ଏବଂ ବୋଗ୍ରାଠାରେ ଜୀବ ବିଚିତ୍ରା (Bio-diversity) ଉଦ୍ୟାନମାନ ପ୍ରତିଷ୍ଠା କରି ଦେଶର ପ୍ରତି ସାମାଜିକ ସ୍ତରରେ ଜୀବସୃଷ୍ଟ ପରିବେଶ (Ecology) ର ଉତ୍କୃଷ୍ଟତା ବ୍ୟକ୍ତିଗତ ସୁଖ-ସ୍ୱାଚ୍ଛନ୍ଦ ଠାରୁ ବହୁ ଉର୍ଦ୍ଧ୍ୱରେ ଏହା କଥାରେ ନୁହେଁ, କାର୍ଯ୍ୟରେ ଦେଖାଇ ଦେଇଛି ।

ଏଣୁ ହେନେରୀ ସଲ୍ଟ ଯଥାର୍ଥରେ କହିଛନ୍ତି, ଆମ ପିଲାମାନଙ୍କ ଜୀବ ହିତୈଷୀ ଦୀକ୍ଷା ଦେବା ସହିତ ଆମ ବୈଜ୍ଞାନିକ, ଆମ ଧର୍ମଯାଜକ, ଆମ ନୀତି ଶିକ୍ଷକ ଏବଂ ଆମ ପଣ୍ଡିତ ବ୍ୟକ୍ତି ମାନଙ୍କୁ ଏହା ଦେବାକୁ ହିଁ ହେବ । ଉତ୍କଳ ଉପକୂଳ ସଭ୍ୟତାକୁ ବଞ୍ଚାଇ ରଖିବାକୁ ହେଲେ ପ୍ରଥମେ ଉପକୂଳବାସୀଙ୍କୁ ହିଁ ଏହି ସବୁ ପଦକ୍ଷେପ ସାଙ୍ଗଠନିକ ମାଧମରେ ସାହସର ସହିତ ହାସଲ କରିବାକୁ ହେବ ।

(୧) ଯେଉଁଠାରେ ପ୍ରାକୃତିକ ଏବଂ ରୋପିତ ଉଭୟ ଜଙ୍ଗଲ ଅଛି, ତାହାର କଡ଼ା ସୁରକ୍ଷା ବ୍ୟବସ୍ଥା, ଗ୍ରାମ୍ୟ ସାଙ୍ଗଠନିକ ମାଧମରେ ଏବଂ ସରକାରୀ ସ୍ତରରେ ।

(୨) ଜବର ଦଖଲ ବା ଅନଧିକାର ଆବାଦ ଜଙ୍ଗଲ ଜମି ଏବଂ ଯେକୌଣସି ସରକାରୀ ଜମିରୁ ଜବର ଦଖଲକାରୀଙ୍କୁ ସମ୍ପୂର୍ଣ୍ଣ ଉଚ୍ଛେଦ ଏବଂ ବୃକ୍ଷରୋପଣ ।

(୩) ଲୁଣା ଜଙ୍ଗଲ ଜମି ଏବଂ ସରକାରୀ ଜମିରେ ଚିଙ୍ଗୁଡ଼ି ଚାଷ ସମ୍ପୂର୍ଣ୍ଣ ଉଚ୍ଛେଦ ଏବଂ ସେହିସବୁ ଜମିରେ ବୃକ୍ଷରୋପଣର ପ୍ରାଧାନ୍ୟତା ଦେବା ।

(୪) ଚିଙ୍ଗୁଡ଼ି ଘେରି ଏବଂ ଜବର ଦଖଲରୁ ମୁକ୍ତ କରାଯାଇଥିବା ସମସ୍ତ ଜଙ୍ଗଲ ଜମିରେ 'ଉପକୂଳ ମଙ୍ଗଳ ବୃକ୍ଷ ବଳୟ' ବନୀକରଣ ମାଧ୍ୟରେ ସୃଷ୍ଟି ।

(୫) ଉପକୂଳବର୍ତ୍ତୀ ମଙ୍ଗଳ ଜଙ୍ଗଲ ସୁରକ୍ଷା ବଳୟ ଅତ୍ୟନ୍ତ ପକ୍ଷେ ସମୁଦ୍ର ତୀରଠାରୁ ପାଞ୍ଚ କିଲୋମିଟର ଦୂର ହେବା ବିଧେୟ । ଯେଉଁଠାରେ ସରକାରୀ ଜମି ନାହିଁ, ପଟ୍ଟାଭୁକ୍ତ ଜମିକୁ କ୍ଷତିପୂରଣ ମାଧ୍ୟମରେ ଦଖଲ କରିବା ଓ ସେ ସ୍ଥାନରେ ସୁରକ୍ଷା ରୋପିତ ବଳୟ ସୃଷ୍ଟି କରିବା ପାଇଁ ପ୍ରାଧାନ୍ୟ ଦେବା ।

(୬) ଯେଉଁଠାରେ ବ୍ୟକ୍ତିଗତ ଜଙ୍ଗଲ ଅଛି, ସେମାନଙ୍କୁ ଏକ ସମୟରେ ଗଛ କାଟିବାକୁ ନଦେଇ ପର୍ଯ୍ୟାୟକ୍ରମେ ଗଛ କାଟିବାକୁ ଦେବା ଓ ପୂର୍ବରୁ କାଟିଥିବା ସ୍ଥାନରେ ବୃକ୍ଷରୋପଣ ନହେଲେ ପୁନର୍ବାର ଗଛ କାଟିବା ଆଦେଶ ବନ୍ଦ କରିବା ।

(୭) ସମସ୍ତ ଉପକୂଳବର୍ତ୍ତୀ ଜଙ୍ଗଲକୁ ଶିଳ୍ପର ମାନ୍ୟତା ଦେବା ଓ ଶିଳ୍ପର ସୁରକ୍ଷା ପାଇଁ ଉପଯୁକ୍ତ ପଦକ୍ଷେପ ନେବା ।

(୮) ଯେଉଁମାନଙ୍କର ବ୍ୟକ୍ତିଗତ ଜମି ସମୁଦ୍ର ତୀରଠାରୁ ୧୦ କିଲୋମିଟର ବ୍ୟବଧାନରେ ଥିବ, ସେହିସବୁ ଜମିରେ ବୃକ୍ଷରୋପଣକୁ ପ୍ରାଧାନ୍ୟ ଦେଇ ସବୁଜ ଶିଳ୍ପର ମାନ୍ୟତା ଦେବା ସଙ୍ଗେ ସଙ୍ଗେ ସେ ସମ୍ବନ୍ଧୀୟ ସମସ୍ତ ସୁବିଧା ଯୋଗାଇ ଦେବା ।

(୯) ସ୍ଥାନୀୟ ଲୋକଙ୍କୁ ଏହି କାର୍ଯ୍ୟ ଶ୍ରମନିଯୁକ୍ତିରେ ପ୍ରାଧାନ୍ୟ ଦେବା ଏବଂ ସବୁସ୍ତର ଏବଂ କ୍ଷେତ୍ରରେ ସେମାନଙ୍କୁ ସଂପୃକ୍ତ କରାଇବା ।

(୧୦) ସ୍ଥାନୀୟ ଲୋକଙ୍କ ମଧ୍ୟରେ ସୁରକ୍ଷା ବଳୟ ଏବଂ ମଙ୍ଗଳ ଜୀବମଣ୍ଡଳର ଉପକାରୀତା ବିଷୟରେ ସଚେତନତା ସୃଷ୍ଟି କରିବା ।

(୧୧) ସ୍କୁଲ ଓ କଲେଜରେ ଏହି ବିଷୟକୁ ପାଠ୍ୟକ୍ରମଭାବେ ବାଧ୍ୟତାମୂଳକ କରିବା ।

(୧୨) ଏହି ମଙ୍ଗଳ ସୁରକ୍ଷା ବଳୟର ସୁରକ୍ଷା ଏବଂ ନୂତନ ଜଙ୍ଗଲ ସୃଷ୍ଟି ଭାରତୀୟ ପ୍ରତିରକ୍ଷା ବିଭାଗରେ ଥିବା ଇକୋଲୋଜିକାଲ ଟାସ୍କଫୋର୍ସ ମାଧ୍ୟମରେ ହେବା ବିଧେୟ ।

(୧୩) ଏଠାରେ ଉପକୂଳ ଜୀବ-ଜଳବାୟୁ ପରିବେଶ ଗବେଷଣା ଅନୁଷ୍ଠାନ ବା କୋଷ୍ଟାଲ ମଙ୍ଗଳ ଇକୋରିସର୍ଚ୍ଚ ଇନିଷ୍ଟିଚ୍ୟୁଟ (Coastol Mangrove Eco Research Institute) ଖୋଲାଯିବା ଅତ୍ୟନ୍ତ ଜରୁରୀ ଏବଂ ସମୟୋପଯୋଗୀ । ବିଶ୍ୱରେ ଅନ୍ୟ ଦେଶମାନଙ୍କରେ ଏପରି ଅନୁଷ୍ଠାନ ରହିଛି ।

(୧୪) ଫିଲିପାଇନ୍ସ ଏବଂ ଇଣ୍ଡୋନେସିଆ (F.A.O) ବିଶ୍ୱଖାଦ୍ୟ କୃଷି ସଂସ୍ଥା ମାଧ୍ୟମରେ ହେଉଥିବା ଲୁଣା ଜଙ୍ଗଲ-ଜୀବ ପୁଷ୍କରିଣୀ (Brackish water agriculture ponds) ଯେଉଁଠାରେ ଜୀବ ପରିବେଶ ବ୍ୟବସ୍ଥା (Eco-system) କୁ ବ୍ୟାଘାତ ନ ଉପୁଜା ମତ୍ସ୍ୟ-ଚିଙ୍ଗୁଡ଼ି ଚାଷ କରାଯାଇ ପାରିବ, ସେ ପ୍ରକାର ବ୍ୟବସ୍ଥା ମାଧ୍ୟମରେ ଏଠାରେ ମତ୍ସ୍ୟ-ଚିଙ୍ଗୁଡ଼ି ଚାଷ କରାଯାଇ ପାରିଲେ ସ୍ଥାନୀୟ ବାସିନ୍ଦାଙ୍କ ଆର୍ଥିକ ସ୍ୱଚ୍ଛଳତାର ଅଭିବୃଦ୍ଧି ଘଟାଇପାରିବ ।

(୧୫) ବଙ୍ଗଳାଦେଶରେ ଜୀବ-ପରିବେଶ ବ୍ୟବସ୍ଥାକୁ ସୁରକ୍ଷିତ ରଖି ଦେଶରେ ମିଳୁଥିବା ମୋଟ ମତ୍ସ୍ୟ ଉତ୍ପାଦନରେ ୮୦ ଶତାଂଶ କେବଳ ସୁନ୍ଦରବନ (ଗଙ୍ଗା, ବ୍ରହ୍ମପୁତ୍ର, ଏବଂ ମେଘ୍ନା ନଦୀ ମୁହାଣ)ରୁ ମିଳୁଥିବା ପରି ଆମ ଜୀବ-ପରିବେଶ ବ୍ୟବସ୍ଥାକୁ ସୁରକ୍ଷିତ ରଖି ଏହା କରାଯାଇପାରିଲେ, ସ୍ଥାନୀୟ ପରିବେଶ-ଅଂଶୀଦାର ମନୁଷ୍ୟ ଉପକୃତ ହୋଇପାରିବ ।

(୧୬) ଏଠାକାର ଜଙ୍ଗଲ ପରିଚାଳନାରେ ଏକ ପ୍ରଧାନ ତ୍ରୁଟି ବିଚ୍ୟୁତି ହେଲା-ଏହିସବୁ ଜଙ୍ଗଲ ବୈଜ୍ଞାନିକ ପଦ୍ଧତିରେ ସୁପରିଚାଳନା ପାଇଁ କାର୍ଯ୍ୟକାରୀ ନକ୍ସା (Working plans) ଦୀର୍ଘ ପଚାଶ ବର୍ଷ ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ହୋଇପାରି ନାହିଁ । ଯେଣୁ ଏହି ଅଞ୍ଚଳର ଜଙ୍ଗଲ, ଅବକ୍ଷୟ ହେବାର ଏହା ଏକ ପ୍ରଧାନ କାରଣ, ଏଣୁ ଏହାର ଆଶୁ ସମାଧାନ ଅତ୍ୟନ୍ତ ଜରୁରୀ ।

(୧୭) ଜଳ-ଭୌତିକ (Hydrodynamic) ଶକ୍ତି ମାଧ୍ୟମରେ ସୃଷ୍ଟି ହୋଇଥିବା ନୂତନ ପଠାର ସୁରକ୍ଷା ଅତ୍ୟନ୍ତ ଜରୁରୀ, ଯାହାକି ଠିକ୍ ସମୟରେ ନିଶ୍ଚୟ କରି ବୃକ୍ଷରୋପଣ ମାଧ୍ୟମରେ ଆବାଦ କରାଯାଇ ନପାରିଲେ ହରାଇବାକୁ ହୁଏ ।

(୧୮) ଏହାଛଡ଼ା ସ୍ଥାନୀୟ ଜୀବ ଜଳବାୟୁରେ କେଉଁ କେଉଁ ପରିବେଶ ବନ୍ଧୁ ସମ୍ପୂର୍ଣ୍ଣ ଉଦ୍ଭିଦମାନେ (Eco-Friendly Plants) ଚାଷ କରାଯାଇପାରିବ, ତାହା ପ୍ରଥମେ ନିର୍ଣ୍ଣୟ କରି ସେଠାକର ଜୀବ ଭୌଗୋଳିକ ପରିବେଶରେ ଚାଷ କରିବାର ପ୍ରୟାସ ହେବା ବିଧେୟ ।

( ୧ ୯ ) ଜୀବ ପରିବେଶ (Ecology) ସମ୍ବନ୍ଧରେ ଜ୍ଞାନ ନଥିବା ବ୍ୟକ୍ତିବିଶେଷ କିମ୍ବା ଅନୁଷ୍ଠାନମାନଙ୍କଦ୍ୱାରା ଉଦ୍ଦେଶ୍ୟମୂଳକ ନିଯୁକ୍ତି ଦେଇ ଏ ସମ୍ବନ୍ଧୀୟ କାର୍ଯ୍ୟ କରାଗଲେ ସଂପୃକ୍ତ ଅଧିକାରୀ କିମ୍ବା ସଂସ୍ଥା ପ୍ରତି ଶକ୍ତ ଦଣ୍ଡବିଧାନର ବ୍ୟବସ୍ଥା ରହିବା ଦରକାର ।

( ୨ ୦ ) ଏହିସବୁ ପ୍ରତିବିଧାନ ଉପକୂଳବର୍ତ୍ତୀ ଯେଉଁସବୁ ସରକାରୀ ଏବଂ ବେସରକାରୀ ସଂସ୍ଥା ପରିବେଶ ସମ୍ବନ୍ଧୀୟ କାର୍ଯ୍ୟରେ ନିଯୁକ୍ତ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ହେବା ଉଚିତ । ଅନୁଷ୍ଠାନର ମୁଖ୍ୟଙ୍କୁ ଏଥିପାଇଁ ଦାୟୀ କରାଯିବାକୁ ବ୍ୟବସ୍ଥା ହେବା ବିଧେୟ ।

( ୨ ୧ ) ସମୁଦ୍ର ତୀରଠାରୁ ଦଶ କିଲୋମିଟର ଦୂର ପର୍ଯ୍ୟନ୍ତ ପାନଚାଷ ସମ୍ପୂର୍ଣ୍ଣ ଉଚ୍ଛେଦ କରିବା, କାରଣ ପାନ ଚାଷ ଦ୍ୱାରା ବହୁ ଜଙ୍ଗଲ ଜମି ବ୍ୟତୀତ ଲୁଣା ଜଙ୍ଗଲର ବିଶେଷ କ୍ଷତି ହୋଇଥାଏ । ଏହା ଚିଙ୍ଗୁଡ଼ି ଚାଷ ପରି ପରିବେଶ ଧ୍ୱଂସ କରିବାରେ ସାହାଯ୍ୟ କରିଥାଏ ।

( ୨ ୨ ) ଓଡ଼ିଶାର ସମସ୍ତ ଅପହୃତ ଲୁଣା ଓ ସମୁଦ୍ର ତୀରବର୍ତ୍ତୀ ଜଙ୍ଗଲ ଉପକୂଳବାସୀଙ୍କୁ ଫେରାଇ ଦିଆଯାଉ । ଯାହା ମିଳିଥିଲା, ପୂର୍ବ ଜମିଦାରମାନଙ୍କଠାରୁ ଏବଂ ସ୍ୱାଧୀନତା ପ୍ରାପ୍ତିର ସ୍ଥିତାବସ୍ଥା ସୁରକ୍ଷିତ ରଖାଯାଉ ।

( ୨ ୩ ) ସାମୁଦ୍ରିକ ଜୀବ-ତତ୍ତ୍ୱ (Biology) ନଦୀ ମୁହାଣ ଜୀବ ତତ୍ତ୍ୱ (Estuary Biology) ଏବଂ ମଙ୍ଗଲ ଜୀବ ତତ୍ତ୍ୱ (Mangrove Biology) ପାଇଁ ଲୁଣା ଜଙ୍ଗଲକୁ ପ୍ରଶିକ୍ଷଣ ରୂପେ ଉତ୍କଳର ସବୁ ବିଶ୍ୱବିଦ୍ୟାଳୟର ଅନ୍ତର୍ଭୁକ୍ତ କରାଗଲେ ଯୁବ ପୀଢ଼ିମାନେ ଏ ସମ୍ବନ୍ଧରେ ବିଶେଷ ଜ୍ଞାନ ଲାଭ କରିପାରିବେ, ଯାହାକି ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ ହେଲା ସମ୍ପୂର୍ଣ୍ଣ ଅବହେଳିତ ହୋଇ ଚିଙ୍ଗୁଡ଼ି ଚାଷରେ ବିନିଯୋଗ ହୋଇଛି ଏବଂ ଉପମଣିଷ ପାଇଁ ସୃଷ୍ଟି କରିଛି ଏକ ବିସ୍ତୃତ ମୃତ୍ୟୁର ବଳୟ ।

***




ଗରାଶି ବୃକ୍ଷର ଫଳ ଯେକି
ଚାରା ହୋଇ ବୃକ୍ଷରୁ ଝଡ଼େ




ବନ୍ଦରୀ ବୃକ୍ଷର ଫଳ ଯେକି ଚାରା ହୋଇ ବୃକ୍ଷରୁ ଖସେ



ସାମୁଦ୍ରିକ ଲୁଣା ଜଙ୍ଗଲ

# ଉପକୂଳ ରାଜପଥ ; କେତେ ନିରାପଦ ?

୧୯୯୯ ମସିହା ନଭେମ୍ବର ମାସ ୧୭ ତାରିଖର ଦୈନିକ ସମ୍ବାଦପତ୍ରରୁ ଦେଖିବାକୁ ମିଳିଲା ଯେ, ଆମ ସରକାରଙ୍କ ୨୧ ସୂତ୍ରୀ କାର୍ଯ୍ୟକ୍ରମ ମାଧ୍ୟମରେ ଗୋପାଳପୁରଠାରୁ ବାଲେଶ୍ୱର ପର୍ଯ୍ୟନ୍ତ ଏକ ସୁଦୀର୍ଘ ଉପକୂଳ ରାଜପଥ ହେବାର ଯୋଜନା କରୁଛନ୍ତି । ଯାହାର ଉଦ୍ଦେଶ୍ୟ ହେଲା ଉପକୂଳବର୍ତ୍ତୀ ସାମୁଦ୍ରିକ ବାଣିଜ୍ୟରେ ଅଭିବୃଦ୍ଧି ଘଟାଇବା ସହିତ ଉପକୂଳ ଅଞ୍ଚଳରେ ଲୁଣାପାଣି ମାଡ଼ିବାକୁ ନଦେବା । ଏ ପ୍ରକାର ଚିନ୍ତାଧାରା ଆମ ଉପକୂଳବାସୀଙ୍କ ପାଇଁ ଏକ ମାରାତ୍ମକ ଯୋଜନା ହେବ ଏବଂ ଉପକୂଳବାସୀ ଏହାଦ୍ୱାରା ସବୁଦିନ ପାଇଁ ସେ ଅଞ୍ଚଳରେ ବଞ୍ଚିବାର ସୁଯୋଗ ଓ ସୁବିଧା ହରାଇ ବସିବେ । ଏଣୁ ଏ ବିଷୟରେ ବୈଜ୍ଞାନିକିକ ଦୃଷ୍ଟିକୋଣ, ବ୍ୟାବସାୟିକ ଦୃଷ୍ଟିକୋଣ ଏବଂ ସାମାଜିକ ଦୃଷ୍ଟିକୋଣରୁ ବିଚାର କରିବାକୁ ଲେଖକ ଯୁକ୍ତିସଙ୍ଗତ ମନେ କରୁଛି ।

**ବୈଜ୍ଞାନିକ ଦୃଷ୍ଟିକୋଣ :**

ସମୁଦ୍ରରେ ବାତ୍ୟା ହେଲେ ଉପକୂଳ ବାସିନ୍ଦାମାନେ ତିନି ପ୍ରକାର ପ୍ରମାଦର ସମ୍ମୁଖୀନ ହୁଅନ୍ତି । ପ୍ରଥମ ହେଲା, ସମୁଦ୍ରରେ ଲଘୁଚାପ ବଳୟ ସୃଷ୍ଟି ହେଲେ, ସମୁଦ୍ର ବକ୍ଷରୁ ଉପକୂଳ ଭୂଭାଗକୁ ଥଣ୍ଡାବାୟୁ ପ୍ରବାହିତ ହୁଏ । ଏହି ବାୟୁର ଭୟାବହତା ପ୍ରଧାନତଃ ଲଘୁଚାପ ବଳୟର ଆକାର ଓ ପ୍ରଖରତା ଉପରେ ନିର୍ଭର କରେ । ଏହାର ଗତିପଥରେ ଯଦି କୌଣସି ପ୍ରତିରୋଧକାରୀ ଶକ୍ତି ନଥାଏ, ତାହାଲେ ଏହି ବାୟୁ ଉପକୂଳ ଜନଜୀବନର ଅଶେଷ କ୍ଷୟକ୍ଷତି ଘଟାଏ ଏବଂ ନିର୍ବିଘ୍ନରେ ବହୁ ବିସ୍ତୀର୍ଣ୍ଣ ଅଞ୍ଚଳ ଅଧିକାର କରିବସେ । ଯାହା ଗତ ବାତ୍ୟାରେ ଦେଖାଗଲା । ଏହି ବାୟୁ ସମୁଦ୍ର ତୀରଠାରୁ ୨୦୦ କି.ମି. ଦୂର ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ରୋଡ଼ ପର୍ଯ୍ୟନ୍ତ ପହଞ୍ଚି କ୍ଷୟକ୍ଷତି ଘଟାଇଥିଲା । ଏହି ବାୟୁ ପ୍ରବାହିତ ଜନିତ କ୍ଷୟକ୍ଷତି ସହିତ ବାୟୁରେ ଥିବା ଜଳ ଘନୀଭୂତ ହୋଇ ବର୍ଷା କରିବା ଦ୍ୱାରା ପ୍ରାଣୀଜଗତକୁ ଧ୍ୱସ୍ତବିଧ୍ୱସ୍ତ କରିପକାଏ । ଯାହା ଘଟିଗଲା ଗତ ମହାବାତ୍ୟାରେ ।

ଦ୍ୱିତୀୟଟି ହେଲା, ସମୁଦ୍ର ବକ୍ଷରେ ଲଘୁଚାପ ବଳୟ ସୃଷ୍ଟି ହେଲେ, ସମୁଦ୍ର ପାଣି ଉପରୁ ବାୟୁର ଚାପ ଅତିମାତ୍ରାରେ କମିଯିବା ଦ୍ୱାରା ପାଣି ଫୁଲିବାକୁ ଲାଗେ ।

ଏହି ସ୍ଥିତ ଜଳ ଜୁଆର ମାଧ୍ୟମରେ ଭୂଭାଗ ମଧ୍ୟକୁ ମାଡ଼ିଚାଲେ । ଏହାର ତୀବ୍ରତା ଲଘୁଚାପ ବଳୟ ଏବଂ ପବନ ସ୍ରୋତର ପ୍ରଖରତା ଉପରେ ନିର୍ଭର କରେ । ପବନ ସ୍ରୋତର ତୀବ୍ରତା ଜୁଆର ଜଳର ବେଗ ଶକ୍ତିକୁ ବହୁମାତ୍ରାରେ ପ୍ରଭାବିତ କରିଥାଏ । ସାଧାରଣ ସମୟରେ ଆମ ସମୁଦ୍ର ତଟରେ ଜୁଆରର ବେଗ ଘଣ୍ଟାପ୍ରତି ପ୍ରାୟ ୫୦ କି.ମି.ରୁ ୭୫ କି.ମି. କିମ୍ବା ଏହାଠାରୁ କିଛି କମ୍ ବେଶୀ ହୋଇପାରେ । ତଟର ଗଭୀରତା ଓ ପବନ ବହିବାର ବେଗ ମଧ୍ୟ ଏହାକୁ ପ୍ରଭାବିତ କରିଥାଏ । କିନ୍ତୁ ବାତ୍ୟା ସମୟରେ ଜୁଆରର ବେଗ ୫୦ କି.ମି.ରୁ କେତେ ବଢ଼ିପାରେ ତାହା ସାଗର ଉପରେ ସୃଷ୍ଟି ଲଘୁଚାପ ବଳୟ ଉପରେ ନିର୍ଭର କରେ । ଏହି ଜୁଆର ପ୍ରବାହିତ ଜଳ ସ୍ରୋତକୁ ପ୍ରତିହତ କରିବାକୁ ଯଦି ବନ ବଳୟ ରୁହେ, ତା'ହେଲେ ସେ ସ୍ପିଡ୍ ବ୍ରେକର (ବେଗ ପ୍ରତିରୋଧକ) Speed-Breker ଭାବେ କାର୍ଯ୍ୟ କରେ ଏବଂ ଜୁଆର ଜଳ ସ୍ରୋତର କିଲୋମିଟର ପ୍ରତି ଦ୍ରୁତଗତିକୁ କମାଇ ମଣିଷର ଚାଲିବା ବେଗ ସହିତ ସମାନ କରି ଘଣ୍ଟା ପ୍ରତି ୭ କି.ମି.କୁ ନେଇ ଆସେ । ସେତେବେଳେ ଜୁଆର ଜଳ ଭୂପୃଷ୍ଠ ସମୁଦ୍ର ପତନଠାରୁ ଉଚ୍ଚ ଥିବାରୁ ସେହି ଜଳ ସମୁଦ୍ରକୁ ଫେରି ଆସିବାକୁ ସକ୍ଷମ ହୁଏ । ବନବଳୟ ଜୁଆର ଜଳସ୍ରୋତ ତୀବ୍ରତାକୁ କମାଇବା ସହିତ ଏହାକୁ ପ୍ରତ୍ୟେକ ଇଞ୍ଚରେ ବ୍ୟାଘାତ ଉପୁଯାଇବା ଦ୍ୱାରା ଏହି ପାଣିର କିଛି ଭାଗ ସ୍ଥାନୀୟ ମୃତ୍ତିକାରେ ଶୋଷି ହୋଇଯାଏ ।

କିନ୍ତୁ ଯଦି ସମୁଦ୍ର ତୀରେ ତୀରେ ଏକ 'ଉପକୂଳ-ରାଜପଥ' ବନାମ ଏକ ଲୁଣାଘେରିବନ୍ଧ ବନ୍ଧାଯାଏ ତାହା ତ ଦୀର୍ଘସ୍ଥାୟୀ ହେବ ନାହିଁ ; ବରଂ ସମସ୍ୟା ସୃଷ୍ଟି କରିବ । କାରଣ ପାରାଦୀପ ବନ୍ଦରର ସମୁଦ୍ରର ଧାରେ ଧାରେ ଲକ୍ଷ ଲକ୍ଷ ବ୍ରକଦ୍ୱାରା ନିର୍ମିତ ପଥର ବନ୍ଧର ଅବସ୍ଥା ଦେଖିଲେ ପ୍ରକୃତି ଈର୍ଷାପରାୟଣତାର ପ୍ରଭାବ ଓ ପ୍ରକୋପ ସହଜରେ ଉପଲବ୍ଧି କରିହୁଏ । ଏହାଛଡ଼ା ଏବେ ବାତ୍ୟାର ପ୍ରଖରତା ଯେପରି ବଢ଼ି ବଢ଼ି ଚାଲିଛି, ଯଦି ଥରେ ବାତ୍ୟା ଜନିତ ପାଣି ବନ୍ଧ ଡେଇଁ ଭୂଭାଗକୁ ପଶିଲା, ତାହା ଆଉ ସହଜରେ ସମୁଦ୍ରକୁ ଫେରି ଆସିବା ସମ୍ଭବ ହେବ ନାହିଁ । ରାସ୍ତା ବଡ଼ ଲୋକଙ୍କ ପାଇଁ ସାଗର ବେଳା ଭ୍ରମଣ ପଥ ବା ମାରାଇନ୍ ଡ୍ରାଇଭ୍ (Marine-Drive) ରୂପେ କାର୍ଯ୍ୟ କରିବ ସିନା ଉପକୂଳବାସୀଙ୍କ ସ୍ୱାର୍ଥ ସୁରକ୍ଷା ପାଇଁ କୌଣସି କାର୍ଯ୍ୟରେ ଲାଗିବ ନାହିଁ । ଏହାଛଡ଼ା ଯାହା ଆମ ଲୁଣା ଜଙ୍ଗଲ ଏବଂ ଲୁଣା ଜଙ୍ଗଲ ନିବାସୀ ଜୀବଜନ୍ତୁମାନେ ବର୍ତ୍ତି ଯାଇଛନ୍ତି ସେସବୁ ମାଫିଆ (Maffia) ମାନଙ୍କଦ୍ୱାରା ଏହି ଉପକୂଳ ରାଜପଥ

ଦେଇ ଲୁଟ ହୋଇଯିବେ । ଅଚିରେ ଆମ ଲୁଣା ଜଙ୍ଗଲ ସବୁ ସମ୍ପୂର୍ଣ୍ଣ ଧ୍ୱଂସ ପାଇଯିବେ । ତେଣିକି ମାଫିଆ ତନ୍ତ୍ର ଚାଲିବ ଏବଂ ସରକାରଙ୍କ ଅକ୍ତିଆର ବାହାରକୁ ସବୁ ସମସ୍ୟା ଚାଲିଯିବ, ଏବେ ଯାହା ଚିଙ୍ଗୁଡ଼ି ଚାଷ ଦ୍ୱାରା ଘଟୁଛି । ଚିଙ୍ଗୁଡ଼ି ଲାଭ ଖାଉଛି କିଏ, ଯନ୍ତ୍ରଣା ଭୋଗୁଛି କିଏ ?

ସବୁଠାରୁ ବେଶୀ ସମସ୍ୟା ସୃଷ୍ଟି କରିବ ପ୍ରଶାନ୍ତ ମହାସାଗରରୁ ଅଣ୍ଡା ଦେବାକୁ ଆସୁଥିବା ଓଲିଭରିଡ୍ଲେ (ସାମୁଦ୍ରିକ କଇଁଛ)ଙ୍କ ପାଇଁ, ଯେଉଁମାନେ ଓଡ଼ିଶା ଉପକୂଳକୁ ସେମାନଙ୍କ ଏକ୍ଟୁଡ଼ିଶାଳ ରୂପେ ଯୁଗଯୁଗ ଧରି ବାଛି ନେଇଛନ୍ତି, ଏବଂ ବିଶ୍ୱରେ ଓଡ଼ିଶା ଉପକୂଳର ପରିଚୟକୁ ତ୍ୱରାନ୍ୱିତ କରିପାରିଛନ୍ତି । ଏବେ ସମୁଦ୍ରରୁ ଚିଙ୍ଗୁଡ଼ି ଉତ୍ପାଦନ ସେମାନଙ୍କ ମୃତ୍ୟୁର କାରଣ ହୋଇଛି । ସେହି ଚିଙ୍ଗୁଡ଼ି ଘେରି ଆମର ମୃତ୍ୟୁର ବଳୟ ସୃଷ୍ଟି କରିପାରିଛି । ପୁଣି ସେହି ଚିଙ୍ଗୁଡ଼ି ଉତ୍ପାଦନ ଏହି ନୂତନ ଉପକୂଳ ରାଜପଥ ଦେଇ ଚାଲିବ, ଯେଉଁ ରାସ୍ତା ଦେଇ ଏହି ସାମୁଦ୍ରିକ କଇଁଛ ଓ ସେମାନଙ୍କର ଅଣ୍ଡା ସୁନ୍ଦର ଭାବେ ମାଫିଆମାନଙ୍କଦ୍ୱାରା କଲିକତା କାହିଁକି ସବୁ ଆଭିଜାତ୍ୟପୂର୍ଣ୍ଣ ନଗରୀର ଷ୍ଟାର ହୋଟେଲରେ ଅମୀରମାନଙ୍କୁ ସୁପ ହୋଇ ପରିଚର୍ଯ୍ୟା ହେବ । ହେ ଈଶ୍ୱର ! ଏ ବିଷୟ ଚିନ୍ତା କଲାବେଳକୁ ଓଡ଼ିଶାର ସ୍ଥିତି କ'ଣ ହେବ ନିର୍ଣ୍ଣୟ କରି ହେଉନାହିଁ । ଏହି ପ୍ରସ୍ତାବ ଆମ ସରକାରଙ୍କ ଭାବନାର ପରିଧି ସ୍ପର୍ଶ ନକରୁ ।

ତୃତୀୟଟି ହେଲା, ସମୁଦ୍ରରେ ଲଘୁଚାପ ସୃଷ୍ଟି ହେଲେ ଲୁଣାଜଳ ସମୁଦ୍ର ବକ୍ଷରେ ଫୁଲି ଉଠି ସେହି ସ୍ଫୀତ ଜଳ ମୁହାଣ ଦେଇ ନଦୀମାନଙ୍କରେ ପ୍ରତିକୂଳ ଦିଗରେ ପ୍ରବାହିତ ହେବାକୁ ଲାଗେ । ଏହି ପ୍ରତିକୂଳ ଦିଗରେ ରହୁଥିବା ଜଳର ବେଗ, ସ୍ଫୀତ ଜଳର ପରିମାଣ ଓ ତାହାର ପାର୍ଶ୍ୱିକ ଶକ୍ତି ଏବଂ ସେହି ସମୟରେ ପ୍ରବାହିତ ବାୟୁର ବେଗ ଉପରେ ନିର୍ଭର କରେ । ସେହିସବୁ ବିପରୀତଗାମୀ ପ୍ରବାହିତ ଜଳସ୍ରୋତ ନଦୀମାନଙ୍କରେ କୂଳଲଂଘି ସେମାନଙ୍କର ଉଭୟ ପାର୍ଶ୍ୱବର୍ତ୍ତୀ ଭୂପୃଷ୍ଠରେ ପ୍ରବାହିତ ହୁଏ ଓ କୂଳଲଂଘି ପ୍ରବାହିତ ହେଉଥିବା ଜୁଆର ଜଳ ସହିତ ମିଶି ଆବଦ୍ଧ ଜଳ ବା Back Water ରୂପେ କାର୍ଯ୍ୟ କରେ । ବାତ୍ୟା କମିଗଲେ ବର୍ଷା ଜଳ , କୂଳଲଘିଥିବା ଜୁଆର ଜଳ ଏବଂ ନଦୀର ପ୍ରତିକୂଳ ଦିଗରେ ପ୍ରବାହିତ ଜଳ ପରେ ଏକତ୍ରିତ ହୋଇ ସମୁଦ୍ର ଆଡ଼କୁ ଭୂମି ଗଡ଼ାଣିଆ ଥିବାରୁ ପ୍ରବାହିତ ହେବାକୁ ଲାଗେ । ଯଦି ଏହି ଜଳ ଗତିପଥରେ

କୌଣସି ପ୍ରତିବନ୍ଧକ ସୃଷ୍ଟି ହୁଏ, ସେହି ପାଣି ଭୂପୃଷ୍ଠର ବହୁ ଅଞ୍ଚଳରେ ହ୍ରଦ ପରି ଛିଡ଼ା ହୋଇ ନରସଂହାରକ ହେବା ସହିତ ସେହି ଅଞ୍ଚଳରେ ଆଶା ବହିର୍ଭୂତ କ୍ଷୟକ୍ଷତି ଘଟାଇବ । ଏଥର ମହାବାତ୍ୟା ଯେଉଁ ଉତ୍ପୀଡ଼ନ ସୃଷ୍ଟି କଲା, ତାହାର ପ୍ରଧାନ କାରଣ ଥିଲା ସେହିସବୁ ଅଞ୍ଚଳରେ ହୋଇଥିବା ଚିଙ୍ଗୁଡ଼ି ଘେରି । ସେହିସବୁ ଘେରି ଆବଦ୍ଧ ଜଳ ସାଗର ମଧ୍ୟକୁ ବୋହି ଯିବାକୁ ବହୁ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ଏବେ ମଧ୍ୟ ଜୁଆର ପାଣି ସମୁଦ୍ର ମଧ୍ୟକୁ ସମ୍ପୂର୍ଣ୍ଣଭାବେ ବୋହି ଯିବାକୁ ସମର୍ଥ ହୋଇନାହିଁ । ଯଦି ଆମ ସରକାର ସମୁଦ୍ର କୂଳେ କୂଳେ ଏକ ଉପକୂଳ ରାଜପଥ ସୃଷ୍ଟି କରନ୍ତି ଏବଂ ଯଦି କେବେ ଏହିପରି କିମ୍ବା ଏହାଠାରୁ ବଡ଼ ମହାବାତ୍ୟା ଘଟେ ଓ ଜୁଆର ପାଣି ବିଭିନ୍ନ ଦିଗରେ ପାର୍ଶ୍ୱିକ ଶକ୍ତି ଏବଂ ପବନ ପ୍ରବାହିତ ଶାନ୍ତି ବଳରେ ସେହି ସବୁ ଅଞ୍ଚଳରେ ପ୍ରବେଶ କରେ, ତାହା ସମୁଦ୍ର ଗର୍ଭକୁ ଫେରି ଆସିବା ତ ଦୂରର କଥା, ଏହା ଉପକୂଳ ସଭ୍ୟତାକୁ ସମ୍ପୂର୍ଣ୍ଣ ବିଲୋପ କରିବାକୁ ସକ୍ଷମ ହେବ । ଏଣୁ ଏଠାରେ ସମସ୍ତ ବିଜ୍ଞ, ଚିନ୍ତାଶୀଳ ଓଡ଼ିଶାବାସୀଙ୍କୁ ଅନୁରୋଧ କରାଯାଇପାରେ ଯେ, ସେମାନେ ଆମକୁ ଏହି ଆଶୁବିପଦରୁ ରକ୍ଷା କରିବାକୁ ସୁଚିନ୍ତିତ ପଦକ୍ଷେପ ନେବେ ।

ନଦୀ ମୁହାଣମାନଙ୍କୁ ସରକାର ବାନ୍ଧିବା କିମ୍ବା ଏହା ଉପରେ ପୋଲ ନିର୍ମାଣ କରିବା କିପରି ସମ୍ଭବ ହେବ କାରଣ ନଦୀ ମୁହାଣଗୁଡ଼ିକ ହଜାର ହଜାର ବର୍ଷର ପଟୁମାଟିଦ୍ୱାରା ସୃଷ୍ଟ ଅଦୃଢ଼ ଭାସମାନ ମୃତ୍ତିକା ଭାବେ ପରିଚିତ । ଏହାର ମୂଳ ପ୍ରସ୍ତର (Parent Rock) କେତେ ଦୂରରେ ଅଛି ସ୍ୱୟଂ ସରକାର ବି କହିପାରିବେ ନାହିଁ । ଏହାଛଡ଼ା ଅନେକ ସମୟରେ ନଦୀ ତାହାର ଗତିପଥ ମଧ୍ୟ ବଦଳାଇଥାଏ । ଧରାଯାଉ, ସରକାର ମୁହାଣକୁ ବାଦ ଦେଇ ନଦୀର ଉପରପଟେ କିଛି ଦୂରରୁ ଏହି ରାସ୍ତାକୁ ବୁଲାଇ ଆଣିବେ । ଏହା ପ୍ରତିବର୍ଷ ବର୍ଷା ଋତୁରେ ଆହୁରି ବିପଦ ସୃଷ୍ଟି କରିବ । ଏହି ରାସ୍ତା ଏବଂ ନଦୀ ମାନଙ୍କ ଉପରେ ହେବା ପୋଲ ସବୁ ବ୍ୟାରେଜ ବା ଆଡ଼ି ବନ୍ଧ ରୂପେ କାର୍ଯ୍ୟ କରିବ । ବର୍ଷାଦିନେ ନଦୀରେ ବହି ଆସୁଥିବା ପାଣି ସ୍ରୋତ ଓ ଆଞ୍ଚଳିକ ବର୍ଷାପାଣି ସୁବିଧାରେ ଓ ସହଜରେ ସମୁଦ୍ରକୁ ନିଷ୍କାସନ ହୋଇପାରିବ ନାହିଁ । କେବଳ ଏହି ପ୍ରତିବନ୍ଧକ ସୃଷ୍ଟି ହେବା ଯୋଗୁ ନଦୀଜଳ କୂଳ ଲଙ୍ଘି ବର୍ଷା ଜଳ ସହିତ ମିଶି ଏକ ବିସ୍ତୀର୍ଣ୍ଣ ଆବଦ୍ଧ ଜଳଭାଗ ସୃଷ୍ଟି କରି ମୃତ୍ୟୁର ତାଣ୍ଡବ ସୃଷ୍ଟି କରିବ । ଆଡ଼ିବନ୍ଧ କେବଳ ନଦୀର ଉପର ଭାଗରେ ହିଁ ସମ୍ଭବ । କିନ୍ତୁ ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳର ନୁହେଁ । ଧରାଯାଉ

ଏହି ପ୍ରସ୍ତାବିତ 'ଉପକୂଳ ରାଜପଥ'କୁ ମୁହାଣଠାରୁ ଦୂରେଇ ନେଇ ସରକାର ଏକ୍ସପ୍ରେସ ରାସ୍ତା ସହିତ ସଂଯୁକ୍ତ କରି ବୁଲାଇ ନେବେ । ଏହା ଆହୁରି ଭୟଙ୍କର ପରିସ୍ଥିତି ସୃଷ୍ଟି କରିବ । ଗତ ଭୟାବହ ବାତ୍ୟାରେ ଏକ୍ସପ୍ରେସ ୱେ (ରାସ୍ତା) ଆବଦ୍ଧ ବର୍ଷା ପାଣିକୁ ସମୁଦ୍ରକୁ ନିଷ୍କାସିତ ହେବାକୁ ଦେଇନଥିଲା ଏବଂ ସେଠାକାର ପରିସ୍ଥିତିକୁ ଆହୁରି ଜଟିଳ କରିଥିଲା । ଓଡ଼ିଶାରେ ଏକ ନୂତନ ମନୁଷ୍ୟକୃତ ହ୍ରଦ (Lake) ସୃଷ୍ଟି ହେବ । ଏଣୁ ସରକାରଙ୍କୁ ଅନୁରୋଧ କରାଯାଇପାରେ ଯେ, ସେ ପ୍ରକୃତି ବିରୁଦ୍ଧରେ ନଯାଇ ପ୍ରକୃତିକୁ ସହଯୋଗ କରନ୍ତୁ ଓ ସେଥିରୁ ଫାଇଦା ଉଠାନ୍ତୁ । ଓଡ଼ିଶାର ସମସ୍ତ ଅପହୃତ ଲୁଣା ଓ ସମୁଦ୍ର ତୀରବର୍ତ୍ତୀ ଜଙ୍ଗଲ ଉପକୂଳବାସୀଙ୍କୁ ଫେରାଇ ଦିଆଯାଉ, ଯାହା ମିଳିଥିଲା ପୂର୍ବ ଜମିଦାରମାନଙ୍କ ଠାରୁ । ଯେଉଁଠାରେ ଜଙ୍ଗଲ ରହିଯାଇଛି, ତାହାକୁ ସୁରକ୍ଷିତ ରଖାଯିବା ସହିତ ଜଙ୍ଗଲ ନଷ୍ଟ ହୋଇଯାଇଥିବା ସ୍ଥାନରେ ନୂତନ ଲୁଣା ଜଙ୍ଗଲ ଓ ସମୁଦ୍ର ତୀରବର୍ତ୍ତୀ ଜଙ୍ଗଲ ସୃଷ୍ଟି କରାଯାଉ । ଏ ବିଷୟରେ ଉପକୂଳବର୍ତ୍ତୀ ଲୋକଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରାଯାଉ । ଏହା କରାଯାଇ ପାରିଲେ ବାତ୍ୟାର ଭୟବହତା ଦୂର ହୋଇ ଯାଇପାରିବ ।

ଏହା ସହିତ ଭାରତ ସରକାରଙ୍କୁ ଅନୁରୋଧ କରାଯାଉ ଭାରତୀୟ ସୈନ୍ୟବାହିନୀରେ ଥିବା ଇକୋଲୋଜିକାଲ ଟାସ୍କଫୋର୍ସ ବା ଜୀବ ପରିବେଶ କାର୍ଯ୍ୟ ବଳ ମାଧ୍ୟମରେ ବୃକ୍ଷରୋପଣ ଦ୍ୱାରା ନୂତନ ଉପକୂଳ ଜଙ୍ଗଲ ସୃଷ୍ଟି କରିବାକୁ । ଏହା କହିବାର ଯୁକ୍ତିଯୁକ୍ତ ଯେ, ଗତ ୧୯୭୧ରେ ହୋଇଥିବା ଘୋର ବାତ୍ୟା ପରେ ୧୯୭୨-୭୩ରେ ଉପକୂଳବର୍ତ୍ତୀ ଲୋକଙ୍କୁ ସୁରକ୍ଷିତ ରଖିବାପାଇଁ ଗୋପାଳପୁରଠାରୁ ବାଲେଶ୍ୱରର ଚାନ୍ଦିପୁର ପର୍ଯ୍ୟନ୍ତ ଏକ ବନବଳୟ ସୃଷ୍ଟି ହେବାର ଉଦ୍ଦେଶ୍ୟ ନେଇ ଓଡ଼ିଶା ବନ ବିଭାଗରେ କୋଷ୍ଟାଲ ଆଫରେଷ୍ଟେସନ୍ ସଂସ୍ଥା ସୃଷ୍ଟି ହୋଇ କୋଟି କୋଟି ଟଙ୍କା ଖର୍ଚ୍ଚ ହେଲା ଗଛ ଲଗାରେ । ଫଳ କ'ଣ ହେଲା ? କାହିଁ କେଁଉଁଠି ନୂତନ ଜଙ୍ଗଲ ସୃଷ୍ଟି ହୋଇଛି ଓ ସେଥିରେ କେତେ ଖର୍ଚ୍ଚ ହୋଇଛି ତାହା ଉପକୂଳବାସୀ ଜାଣିଲେ ନାହିଁ, ଯାହାର ସମୀକ୍ଷା ଏପର୍ଯ୍ୟନ୍ତ ହୋଇନାହିଁ । ନିଷ୍ଠା ଓ ଉତ୍ସର୍ଗୀକୃତ କାର୍ଯ୍ୟ ବ୍ୟତୀତ ବୃକ୍ଷରୋପଣ ଏବଂ ନୂତନ ଜଙ୍ଗଲ ସୃଷ୍ଟି କେବେ ହୋଇପାରେନା । ଏଣୁ ଭାରତୀୟ ସେନାବାହିନୀର ଏହି କାର୍ଯ୍ୟରେ ଯୋଗଦାନ ଅତ୍ୟନ୍ତ ପ୍ରୟୋଜନ ।

## ଆମ ପ୍ରତି ପ୍ରକୃତିର ବିଦ୍ରୂପ

ଅନ୍ୟ ଏକ ପରିତାପର ବିଷୟ ହେଲା ବାତ୍ୟା ପୂର୍ବରୁ କିମ୍ବା ବାତ୍ୟା ଅବ୍ୟବହିତ ପୂର୍ବରୁ ସମୁଦ୍ର ଜୁଆରର ଘଣ୍ଟାପ୍ରତି ବେଗ ଏବଂ ନଦୀ ମୁହାଣ ଦେଇ ସମୁଦ୍ର ଜଳର ନଦୀର ପ୍ରତିକୂଳ ଦିଗରେ ପାଣି ସ୍ରୋତର ବେଗ ମାପିବା ପାଇଁ ଆମ ଦେଶରେ ବିଂଶ ଏକତମ ଶତାବ୍ଦୀର ଅଭ୍ୟୁଦୟରେ ମଧ୍ୟ କୌଣସି ବ୍ୟବସ୍ଥା ନାହିଁ । ଯଦି ଏହି ବ୍ୟବସ୍ଥା ଥାଆନ୍ତା ବାୟୁର ବେଗ ଯେପରି ବାତ୍ୟା ପୂର୍ବରୁ ୨୦୦ରୁ ୩୦୦ କି.ମି. ଘଣ୍ଟାପ୍ରତି ନିର୍ଣ୍ଣୟ କରାଯାଇପାରିଲା, ସମୁଦ୍ର ଜୁଆର ଏବଂ ପ୍ରତିକୂଳ ନଦୀ ସ୍ରୋତ ମଧ୍ୟ ସେହି ପ୍ରକାରେ ନିର୍ଣ୍ଣୟ କରାଯାଇ ପାରିଥିଲେ ଲୋକମାନଙ୍କୁ ସରକାର ଆକ୍ରାନ୍ତ ସ୍ଥାନମାନଙ୍କରୁ ସ୍ଥାନାନ୍ତରିତ କରିପାରିଥାନ୍ତେ ଏବଂ ସେମାନଙ୍କୁ ଏହି ଦୁଃଖଦ ଯନ୍ତ୍ରଣାରୁ ରକ୍ଷା କରିପାରିଥାନ୍ତେ । ସୁନ୍ଦର ବନର ସମୁଦ୍ର ମୁହାଣରେ ଏହି ସ୍ରୋତର ବେଗ ଘଣ୍ଟାପ୍ରତି ୩୫ କି.ମି. ଥିବାବେଳେ ନଦୀର ଉପରିଭାଗରେ ଘଣ୍ଟାପ୍ରତି ୭ କି.ମି. ରୁହେ । ସେହିପରି ଭଟ୍ଟା (Ebb) ସମୟରେ ଏହାର ବେଗ ଘଣ୍ଟାପ୍ରତି ୧୦ କି.ମି. ଥାଏ । ନଦୀ କୂଳରେ ଜଙ୍ଗଲ ଥିଲେ ଜଳର ବିପରୀତ ଗତିକୁ ରୋଧ କରି ଏହି ସ୍ରୋତର ଶକ୍ତି ପ୍ରତିହତ କରେ । ଏଣୁ ଜଙ୍ଗଲ ବ୍ୟତୀତ ଅନ୍ୟ କୌଣସି ଅପ୍ରାକୃତିକ ଉପାୟରେ ଆମକୁ ଏହି ଦୁର୍ଗତିରୁ ରକ୍ଷା ମିଳିବ ନାହିଁ । ଏହା ପ୍ରତ୍ୟେକ ସୁଚିନ୍ତିତ ଦେଶ ତଥା ପ୍ରଦେଶର ନାଗରିକଙ୍କ ପାଇଁ ସମୟର ଆହ୍ୱାନ ଆସିଛି ।

ଏଠାରେ ସୂଚାଇ ଦିଆଯାଇପାରେ  ଯେ, ଲୁଣା ଜଙ୍ଗଲରେ ଉଦ୍ଭିଦମାନେ ଲୁଣାପାଣି ମାଡୁଥିବା ଛାଡୁଥିବା ପରିବେଶରେ ହିଁ ସୁନ୍ଦର ଭାବେ ବଢ଼ିପାରନ୍ତି । ଏଥିରୁ ତ୍ରୁଟି ହେଲେ ଜମିରେ ଲୁଣା ଅଂଶ ବଢ଼ିଯାଇ ଅତିରିକ୍ତ ଲବଣାକ୍ତ (Hyper Salination) ଘଟି ଉଦ୍ଭିଦମାନଙ୍କର ମୃତ୍ୟୁ ଘଟେ । ଏଣୁ ଉପକୂଳ ରାଜପଥ କରିଦେଲେ ଏହିସବୁ ବ୍ୟାଘାତ ଘଟି ଲୁଣା ଜଙ୍ଗଲ ସମ୍ପୂର୍ଣ୍ଣ ଭାବେ ନଷ୍ଟ ହୋଇଯିବ ଏବଂ ଲବଣାକ୍ତ ମରୁଭୂମି ସୃଷ୍ଟି ହେବ, ଯାହା ଘଟିଛି ଆମ କଚ୍ଛ ଉପକୂଳ ଏବଂ ଥର୍ ମରୁଭୂମିରେ ।

ମୁଁ ଏଠାରେ ବାୟୁ ସୁରକ୍ଷା ବନବଳୟର ଏକ ଚିତ୍ର ପାଠକମାନଙ୍କ ଅବଗତି ପାଇଁ ଦେବା ଉଚିତ ମନେ କରୁଛି । ଏଣୁ  'ଉପକୂଳରାଜରାସ୍ତା' ଆମ ଦୁର୍ଗତିର ସମାଧାନର ପନ୍ଥା ନିଶ୍ଚିତଭାବେ ନୁହେଁ ।

* * *

# ଓଡ଼ିଶା ଉପକୂଳର ମହାପ୍ରଳୟପାଇଁ କିଏ ଦାୟୀ ?

କେବଳ ଆମ ଦେଶ କାହିଁକି, ଯେତେବେଳେ ସାରା ବିଶ୍ୱ ଆମକୁ ଛତ୍ର ଦେବାକୁ ତତ୍ପର ସେତେବେଳେ ଏହା ଚିନ୍ତା କରାଯାଇପାରେ ଆମକୁ ଏ ଅବସ୍ଥା ଆଣିଦେଲା କିଏ ? କେଉଁମାନଙ୍କ ପାଇଁ ଆମ୍ଭେ ଉପକୂଳବାସୀ ଏ ଅବସ୍ଥାଗ୍ରସ୍ତ । କେଉଁମାନଙ୍କ ପାଇଁ ଆମ୍ଭେମାନେ ହରାଇ ବସିଛୁ ଆମ୍ଭମାନଙ୍କର ସ୍ୱାଭିମାନ ଓ ବ୍ୟକ୍ତିତ୍ୱ । ଯେଉଁ ଉପକୂଳ ଓଡ଼ିଆ ଜନ୍ମରୁ ଦେଇ ଶିଖିଥିଲା ଭିକ୍ଷାଦାନ, ଅନ୍ନଦାନ ଏବଂ ବସ୍ତ୍ରଦାନ ତା'ର ପିଲାମାନେ ଆଜି ଟ୍ରକ ପିଛାରେ ଧାଇଁଛନ୍ତି ମୁଠାଏ ଚାଉଳ ଓ ଖଣ୍ଡେ ବସ୍ତ୍ର ପାଇଁ, ନିଜ ପେଟ ଚାଖଣ୍ଡକ ପାଇଁ, ନିଜ ବିବସ୍ତ୍ର ଶରୀର ପାଇଁ । କି କରୁଣ ଦୁର୍ଦ୍ଦଶା ! ଚିନ୍ତାକଲାବେଳକୁ ସମଗ୍ର ଶରୀରରେ ଅନୁଭବ ହେଉଛି ବିଦ୍ୟୁତର ତଡ଼ିତ । ଉପକୂଳ ଓଡ଼ିଆ ବଞ୍ଚି ଶିଖିଛି ତା'ର ମାଟି ତିଆରି ଛଣଛପର ଘରକୁ ନେଇ, ଖାଇ ଶିଖିଛି ସେହି ମାଟିରୁ ଜନ୍ମିଥିବା ପଖାଳକୁ ନେଇ; କିନ୍ତୁ ସ୍ୱାଭିମାନ ଓ ବ୍ୟକ୍ତିତ୍ୱ ପାଇଛି ଶକ୍ତିପୀଠ ଶାରଳାରୁ ! ଯେଉଁଠାରୁ ଗାଁଉଲି ଶାରଳା ଦାସ ଲେଖିଥିଲେ ପ୍ରଚ୍ଛନ୍ନ ବ୍ୟକ୍ତିତ୍ୱପୂର୍ଣ୍ଣ ସ୍ୱାଭିମାନ ଭରା ଶାରଳା ମହାଭାରତ – ଏହି ଛଣ ଛପର ମାଟିଘରର ନଡ଼ିଆ ପତ୍ର ନିର୍ମିତ ଆସନରେ ବସି । କାହିଁ ତ କେବେ ଏପରି ମହାପ୍ରଳୟ ଘଟୁ ନଥିଲା ।

ଏହି ଦୁର୍ଦ୍ଦଶା ବଳିପଡ଼ିଲା ନ'ଅଙ୍କ ଦୁର୍ଭିକ୍ଷକୁ– ଘଟିଥିଲା ୧୮୬୬ରେ । ସେତେବେଳେ ଅନେକ ଲୋକ ମୃତ୍ୟୁବରଣ କରିଥିଲେ; କିନ୍ତୁ ସ୍ୱାଭିମାନ, ବ୍ୟକ୍ତିତ୍ୱ ହରାଇ ନଥିଲେ । ସ୍ୱାଭିମାନ ଓ ବ୍ୟକ୍ତିତ୍ୱ ବଞ୍ଚାଇ ରଖିଥିଲେ ତେନ୍ତୁଳି ପତ୍ର ଖାଇ, ମୃତ୍ୟୁକୁ ଶ୍ରେୟକରି, ଭୀଷ୍ମର ପ୍ରତିଜ୍ଞାକୁ ନେଇ, କର୍ଣ୍ଣ ଓ ଦୁର୍ଯ୍ୟୋଧନର ସ୍ୱାଭିମାନରୁ ଶିକ୍ଷାଲାଭ କରି ଏବଂ ଶ୍ରୀକୃଷ୍ଣ- ଅର୍ଜୁନର ଉକ୍ତି-ପ୍ରତ୍ୟୁକ୍ତି ଗୀତାକୁ ପାଥେୟ କରି । ଏଠାରେ ଅସାଧାରଣ ବ୍ୟକ୍ତିତ୍ୱର ଅଭାବ ନାହିଁ । ଏଠାରେ ପ୍ରତ୍ୟେକ ଜଣେ ଜଣେ କର୍ମୀ ଓ କର୍ମଯୋଗର ସାଧକ । ଏଠାରେ ସରକାରଙ୍କୁ ସବିନୟ ଅନୁରୋଧ ଏହି କର୍ମଯୋଗୀମାନଙ୍କୁ ନୂତନ ଓଡ଼ିଶାର ପରିକଳ୍ପନା ( ନକ୍ସା ) ଧରାଇ ଦେଇ କର୍ମନିଯୁକ୍ତି ସୃଷ୍ଟି କରିପାରିଲେ ସେହି ବ୍ୟକ୍ତିତ୍ୱର ଅଧିକାରୀମାନେ ଜାପାନ ଭଳି ଦ୍ୱିଗୁଣିତ କରି ଗଢ଼ି ତୋଳିବେ ଉପକୂଳ ଓଡ଼ିଶା, ନୂତନ ରୂପ ଦେଇ । କିନ୍ତୁ ଯେଉଁ କ୍ଷତ-ପୀଡ଼କ ଉପକୂଳ ଇତିହାସ ସୃଷ୍ଟି ହେଲା, ତାହାର ସ୍ରଷ୍ଟାମାନଙ୍କର ଚକ୍ରବ୍ୟୂହ ସରକାର ଭେଦ କରିପାରିବେ ତ ? କ୍ଷୁବ୍ଧ, କ୍ଷୁଧିତ ଉପକୂଳ ଓଡ଼ିଆ ଚାହେଁ ସବୁ ଅନ୍ତର୍ନିହିତ ଘଟଣାର

ପରିପ୍ରକାଶ ଘଟୁ । ଜନତା ଦରବାର ଜାଣୁ କିପରି ଓ କାହିଁକି ଏପରି ଦୁର୍ଦ୍ଦଶା ଘଟିଲା । ଏହି ନିମ୍ନ ବ୍ୟାଖ୍ୟାରୁ ସମସ୍ତ ଘଟଣା ଉନ୍ମୋଚନ ହୋଇପାରିବ ।

୧୯୪୭ ସ୍ୱାଧୀନତା ପ୍ରାପ୍ତି ପରେ ପରେ ସବୁ ପୂର୍ବ ଗଡ଼ଜାତ ସହିତ ସବୁ ପୂର୍ବ ଜମିଦାରୀ ଉଚ୍ଛେଦ ହୋଇ ଭାରତ ସରକାର ତଥା ପ୍ରାଦେଶିକ ସରକାରଙ୍କ ଅଧୀନସ୍ଥ ହେଲା । ଜମିଦାରୀ ଉଚ୍ଛେଦ ପୂର୍ବରୁ କୁଜଙ୍ଗ ଜମିଦାରୀ, ପଶ୍ଚିମବଙ୍ଗର ବର୍ଦ୍ଧମାନ ଷ୍ଟେଟର ବଙ୍ଗାଳୀ ଜମିଦାରଙ୍କର ଥିଲା । ଇଂରେଜ ସରକାରଙ୍କ ସୂର୍ଯ୍ୟାସ୍ତ ଆଇନ (sunset law) ପ୍ରଚଳନ ଥିଲା ସମୟରେ ଏହି ଜମିଦାରୀକୁ ସେ କଲିକତାରେ ନିଲାମରେ ଧରିଥିଲେ । ଜମିଦାରୀ ଉଚ୍ଛେଦ ପରେ ଓ ତତ୍ ସମ୍ବନ୍ଧୀୟ ମାମଲାର ଅଦାଲତ ଫଇସଲା ପରେ ଏହି ଜମିଦାରୀର ସମସ୍ତ ଜଙ୍ଗଲାଞ୍ଚଳ ସହିତ କନିକା ଜମିଦାରୀର ସମସ୍ତ ଜଙ୍ଗଲାଞ୍ଚଳ ରାଜସ୍ୱ ବିଭାଗର ହସ୍ତଗତ ହେଲା ୧୯୫୨ରେ । ଏହି ସବୁ ଜଙ୍ଗଲ, ସମୁଦ୍ରତୀରବର୍ତ୍ତୀ ଲୁଣା-କୁଆରିଆ ଓ ଅନ୍ୟକିଛି ନଦୀକୂଳିଆ ଏବଂ ବେଳାଭୂମି ଜଙ୍ଗଲ ଅନ୍ତର୍ଭୁକ୍ତ । ସେହି ଜଙ୍ଗଲଗୁଡ଼ିକ ଦୀର୍ଘ ୮ ବର୍ଷ (୧୯୫୨ରୁ ୧୯୫୯) ପର୍ଯ୍ୟନ୍ତ ରାଜସ୍ୱ ବିଭାଗ ହାତରେ ରହିବା ପରେ ୧୯୫୯ ମସିହା ଅକ୍ଟୋବର ମାସ ୧୫ ତାରିଖରେ ଜଙ୍ଗଲ ବିଭାଗକୁ ହସ୍ତାନ୍ତର ହେଲା । ଏହି ଯେଉଁ ଦୀର୍ଘ ୮ ବର୍ଷ ଏହି ଜଙ୍ଗଲଗୁଡ଼ିକ ରାଜସ୍ୱ ବିଭାଗ ହାତରେ ରହିଲା, ତାହାର କାରଣ କ'ଣ ଥିଲା ? ଉଦ୍ଦେଶ୍ୟ ମହତ ନଥିଲା । ସେଠାରୁ ଆରମ୍ଭ ହେଲା ଲୁଣା ଜଙ୍ଗଲ ଉପରେ ଅତ୍ୟାଚାରର ଦିନ । ଭୂମିଖୋର ଲେଲିହାନ ଜିହ୍ୱା କାର୍ଯ୍ୟ କଲା । ଉପକୂଳବାସୀଙ୍କ ଆୟୁରେଖାରେ ଲାଗିଲା ଘୁଣ । ଏହି ଦୁଇ ଜମିଦାରୀର ଜଙ୍ଗଲ କେତେଗୁଡ଼ିଏ ଜଙ୍ଗଲ ବ୍ଲକ ବା ଜଙ୍ଗଲଖଣ୍ଡର ଅନ୍ତର୍ଭୁକ୍ତ, ଯାହାକି ସେହି ସମୟରେ ରାଜସ୍ୱ ବିଭାଗରୁ ସେହି ସମୟର ଅଞ୍ଚଳ ଅଧିକାରୀ, ଏବର ତହସିଲଦାରମାନଙ୍କଠାରୁ ଆଠଗଡ଼ ଡି.ଏଫ.ଓ.ଙ୍କୁ ହସ୍ତାନ୍ତର ହୋଇଥିଲା । ସମୟକ୍ରମେ ଯେତେବେଳେ (୧୯୮୫) ରାଜନଗର ବନ୍ୟପ୍ରାଣୀ ଜଙ୍ଗଲ ଡିଭିଜନ ନୂତନ ଭାବେ ଗଢ଼ା ହେଲା, ଏହିସବୁ ଜଙ୍ଗଲ ବ୍ଲକଗୁଡ଼ିକ ଆଠଗଡ଼ ଡି.ଏଫ.ଓ.ଙ୍କ ଅଧୀନରୁ ରାଜନଗର ବନ୍ୟପ୍ରାଣୀ ଡି.ଏଫ.ଓ.ଙ୍କ ଅଧୀନକୁ ଆସିଲା । ଏହି ଜଙ୍ଗଲ ବ୍ଲକଗୁଡ଼ିକ ରିଜର୍ଭ ଫରେଷ୍ଟ (Reserve Forest) ବା ଆରକ୍ଷିତ ବନ ନଥିଲେ । ଏହିସବୁ ଜଙ୍ଗଲ ବ୍ଲକଗୁଡ଼ିକ ଖେସରା ବା ସଂରକ୍ଷିତ ବନ (Protected forest) ଭାବେ ପରିଚିତ । ଏଠି ଆଜ୍ଞା, ସରକାରଙ୍କର ଏକ ବିଚିତ୍ର ଶାସନ ଥିଲା । ଅବଶ୍ୟ ଜଙ୍ଗଲ ସଂରକ୍ଷଣ ଆଇନ ୧୯୮୦ ପୂର୍ବରୁ ଏହା ପ୍ରଚଳିତ ଥିଲା । ଏଠାରେ ଦ୍ୱୈତଶାସନ (Dual Administration) ଚାଲିଥିଲା । ଗଛ

## ଆମ ପ୍ରତି ପ୍ରକୃତିର ବିଦ୍ରୁପ

ଜଙ୍ଗଲ ଡିପାର୍ଟମେଣ୍ଟର ଶାସନାଧୀନ ଥିବାବେଳେ ଜମି ବା ଭୂମି ରାଜସ୍ୱ ବିଭାଗର ଥିଲା । ଜମିରୁ ଗଛ ଚାଲିଗଲେ ବା ଅପହରଣ କରି ନିଆଗଲେ ଯିଏ କେହି ସୁବିଧାରେ ରେଭେନ୍ୟୁ ଇନିସପେକ୍ଟରକୁ ଓ ରାଜସ୍ୱ ବିଭାଗକୁ ପ୍ରଭାବିତ କରିପାରିଲେ, ସୁନ୍ଦର ଭାବେ ଏହି ଜମିରୁ କିଛି ପଟ୍ଟା ବା ଲିଜ୍ ନେଇ ନିଜେ ବ୍ୟବହାର କରନ୍ତୁ କିମ୍ୱା ପରେ ବିକ୍ରି କରି ଦେଇପାରୁଥିଲେ । ଏଥିରେ କୌଣସି ବାଧା ନଥିଲା । ଏହି ବ୍ୟାଧି ପ୍ରାୟ ସବୁ ଖେସେରା ବା ପ୍ରୋଟେକ୍ଟଡ଼ ଜଙ୍ଗଲକୁ ଗ୍ରାସ କରିଥିଲା ଆମ ପ୍ରଦେଶରେ । କାରଣ ଏହିସବୁ ଭୂମି ଥିଲା ରେଭିନ୍ୟୁ ଡିପାର୍ଟମେଣ୍ଟ ବା ରାଜସ୍ୱ ବିଭାଗର । ଏହା ହେଉଛି ପ୍ରଧାନ କାରଣ ଓଡ଼ିଶାରୁ ଜଙ୍ଗଲ ଲୋପ ପାଇବାର । ଏବେ ସେହି ବୁଦ୍ଧିମାନ ଲୋକମାନେ ସେପ୍ରକାର ପଟ୍ଟାଭୁକ୍ତ ଜମିରୁ ଗଛ ଓ ଜମି ବିକ୍ରି କରି ବେଶ ଲାଭବାନ ହୋଇପାରୁଛନ୍ତି । ଆମ ଦେଶ ବା ପ୍ରଦେଶରେ ଚାଲୁଥିବା ରାଜସ୍ୱ ବିଭାଗ ସାମ୍ରାଜ୍ୟରେ ସ୍ୱର ଉତ୍ତୋଳନ କରିବାରୁ ଖୋଦ୍ ଜଙ୍ଗଲ ଅଫିସରମାନେ ଆଗପଛ ହେଉଥିଲେ । କାରଣ ଏହା ଥିଲା ରାଜସ୍ୱ ବିଭାଗର ରାଜ-ସ୍ୱ ଶାସନ । ଅନେକବାର ଶୁଣିବାକୁ ମିଳେ ପଦସ୍ଥ ବ୍ୟକ୍ତିବିଶେଷଙ୍କ ଠାରୁ ମଣିଷ ରହିବେ ନା ଜଙ୍ଗଲ ରହିବ । ଏବେ ଆମ ଲୋକମାନେ ବୁଝନ୍ତୁ ମଣିଷ କାହିଁକି ସମଗ୍ର ପ୍ରାଣୀଜଗତ ତିଷ୍ଠିବାକୁ ହେଲେ ଉଦ୍ଭିଦଜଗତ ବା ଜଙ୍ଗଲର ନିତ୍ୟାନ୍ତ ଆବଶ୍ୟକତା ରହିଛି । ରାଜସ୍ୱ ବିଭାଗରୁ ସେତେବେଳେ ଜଙ୍ଗଲ ବିଭାଗକୁ ମୋଟ ପ୍ରୋଟେକ୍ଟଟେଡ୍ ବ୍ଲକ ହସ୍ତାନ୍ତର ହେବା ପରେ କାଁଭାଁ ୫ଟି ଜଙ୍ଗଲ ବ୍ଲକକୁ ଆରକ୍ଷିତ ବା Reserve Forest ମାନ୍ୟତା ମିଳିଥିଲା । କିନ୍ତୁ ରାଜନଗର ବନ୍ୟପ୍ରାଣୀ ଡିଭିଜନ ଅନ୍ତର୍ଭୁକ୍ତ କୁଜଙ୍ଗ, ଚାନ୍ଦବାଲି, ରାଜନଗର ଏବଂ ମହାକାଳପଡ଼ା (ଡାଙ୍ଗମାଳ) ପ୍ରଭୃତି ଜଙ୍ଗଲ ରେଞ୍ଜ ଅଧୀନସ୍ଥ ୪୬ଟି ଜଙ୍ଗଲ ବ୍ଲକଗୁଡ଼ିକୁ ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ ପୂର୍ତ୍ତି ଆମ୍ଭେମାନେ ପାଳିବା ପରେ ମଧ୍ୟ ରିଜର୍ଭ ଫରେଷ୍ଟର ମାନ୍ୟତା ମିଳିପାରିଲା ନାହିଁ (କାହିଁକି) ? ସ୍ୱାଧୀନତା ପ୍ରାପ୍ତି କାହାକୁ ସମ୍ପୂର୍ଣ୍ଣ ପୂର୍ଣ୍ଣତା ଦେଇଥିବାବେଳେ ଉପକୂଳବାସୀଙ୍କୁ ଦେଇଗଲା ଅପୂର୍ଣ୍ଣତାର ରୁଧିର ସିକ୍ତ ସ୍ୱାକ୍ଷର । କରିଗଲା ମାନବ ସଂହାରର ବିଶ୍ୱ ଇତିହାସ ସୃଷ୍ଟି ।

ଏହିସବୁ ପ୍ରୋଟେକ୍ଟେଡ଼ ଲୁଣା ଜଙ୍ଗଲ ବ୍ଲକଗୁଡ଼ିକୁ ରିଜର୍ଭ ଫରେଷ୍ଟର ମାନ୍ୟତା ଏପର୍ଯ୍ୟନ୍ତ ନମିଳିବାର କାରଣ କ'ଣ ? କାହାର ଓ କେଉଁମାନଙ୍କର ଅଦୃଶ୍ୟ ହାତ ଏଥିରେ କାମ କରୁଥିଲା ଏବଂ ଏବେ ମଧ୍ୟ କାମ କରୁଛି ? ଏହା ସରକାରଙ୍କ ବ୍ୟତୀତ ଅନ୍ୟ କିଏ କହିବ ? ଏଣୁ ଏହାର ସତ୍ୟାସତ୍ୟ ପ୍ରକାଶପାଉ ଏବଂ ଦେଶର ପ୍ରତ୍ୟେକ ନାଗରିକ ଜାଣିବାପାଇଁ ସୁଯୋଗ ସୃଷ୍ଟି ହେଉ ।

ଏହିସବୁ ପ୍ରୋଟେକ୍‌ଟେଡ଼ ଲୁଣା ଜଙ୍ଗଲ ବ୍ଲକଗୁଡ଼ିକ ରିଜର୍ଭ ଜଙ୍ଗଲର ମାନ୍ୟତା ୧୯୫୨ରୁ ପାଇଥିଲେ । ଭାରତ ସରକାରଙ୍କ ଜଙ୍ଗଲ ଅଧିନିୟମ ୧୯୨୭ (Indian Forest Act 1927) ଏବଂ ପରେ ଓଡ଼ିଶା ସରକାରଙ୍କ ପ୍ରଚଳିତ ଜଙ୍ଗଲ ଅଧିନିୟମ ୧୯୭୨ (The Orissa Forest Act 1972) ଲାଗୁ ହୋଇ ପାରିଥାନ୍ତା । ଏହାଦ୍ୱାରା କୌଣସି ଜଙ୍ଗଲ ଜମିରୁ ଇଞ୍ଚେ ମଧ ଖୋଦ୍ ପ୍ରାଦେଶିକ ସରକାର କିମ୍ବା ସରକାରଙ୍କ କେହି ଅନୁଗ୍ରହୀତାଙ୍କ ଉଦ୍ଦେଶ୍ୟମୂଳକ ବ୍ୟବହାରରେ ଲଗାଇ ପାରିବାକୁ ସକ୍ଷମ ହୋଇପାରି ଥାନ୍ତେ । କାରଣ ରିଜର୍ଭ ଜଙ୍ଗଲ ମଧରେ ସାଧାରଣ ପ୍ରବେଶ ଏକ ଧର୍ତ୍ତବ୍ୟ ଅପରାଧ । ଯଦି ଏହି ପ୍ରଚଳିତ ଅଧିନିୟମ ବ୍ୟବସ୍ଥାକୁ କେହି ବ୍ୟକ୍ତିବିଶେଷ ଉଲ୍ଲଂଘନ କରିଥାନ୍ତେ, ସେମାନଙ୍କ ପ୍ରତି ଏହି ଅଧିନିୟମ ବ୍ୟବସ୍ଥାନୁଯାୟୀ ସମୟାନୁକ୍ରମିକ କାର୍ଯ୍ୟାନୁଷ୍ଠାନ ରାଜ୍ୟ ଜଙ୍ଗଲ ମହକୁମା ଅଫିସରମାନଙ୍କଦ୍ୱାରା କରାଯାଇପାରିଥାନ୍ତା କିମ୍ବା ଯଦି ଏହି ରିଜର୍ଭ ଜଙ୍ଗଲ ମଧରୁ କିଛି ଅଂଶ ଖୋଦ୍ ପ୍ରାଦେଶିକ ସରକାର ଅନ୍ୟ କୌଣସି କାର୍ଯ୍ୟରେ ଲଗାଇବାକୁ ଇଚ୍ଛାପ୍ରକାଶ କରିଥାନ୍ତେ, ତାଙ୍କୁ ସେହି ଆବଶ୍ୟକ ଜଙ୍ଗଲ ଜମି ଉପରୁ ରିଜର୍ଭ ଜଙ୍ଗଲ ମାନ୍ୟତା (De-Reservation) ପ୍ରତ୍ୟାହାର କରିବାକୁ ହୋଇଥାନ୍ତା । (ଅବଶ୍ୟ ଏହି କାର୍ଯ୍ୟ କେବଳ ୧୯୮୦ ପୂର୍ବରୁ ଭାରତ ସରକାରଙ୍କ ଜଙ୍ଗଲ ସଂରକ୍ଷଣ ଅଧିନିୟମ ୧୯୮୦ (The forest (Conservation) Act 1980 ଲାଗୁ ହେବା ପୂର୍ବରୁ ପ୍ରାଦେଶିକ ସରକାର କରିବାକୁ ସକ୍ଷମ ହୋଇପାରିଥାନ୍ତେ; କିନ୍ତୁ ୧୯୮୦ ପରେ ନୁହେଁ । ୧୯୮୦ ପରେ ଏହି କାର୍ଯ୍ୟ କରିବାକୁ ହୋଇଥିଲେ ପୂର୍ବରୁ ପ୍ରାଦେଶିକ ସରକାରଙ୍କୁ ଭାରତ ସରକାରଙ୍କ ସ୍ୱୀକୃତି ନେବାକୁ ହୋଇଥାନ୍ତା ।) ଏହିସବୁ କାର୍ଯ୍ୟାନୁଷ୍ଠାନ କଲାବେଳକୁ ଏ ବିଷୟ ବିରୋଧିଦଳ ଠାରୁ ଆରମ୍ଭ କରି ଦେଶ ଓ ପ୍ରଦେଶର ସବୁ ଚେତନଶୀଳ ନାଗରିକ ଜାଣିବାକୁ ସୁଯୋଗ ପାଇଥାନ୍ତେ । ବିଶେଷକରି ଉପକୂଳବାସୀଙ୍କ ଆୟୁରେଖା (Life line) ମେଣ୍ଟାଇବା ପୂର୍ବରୁ ସେମାନେ ସରକାରଙ୍କ ଅପକର୍ମ ବିଷୟରେ ଜାଣିବାକୁ ପାଇପାରିଥାନ୍ତେ । ସରକାର ହୁଅନ୍ତୁ କିମ୍ବା ତାଙ୍କର କେହି ଶ୍ରଦ୍ଧାର ପାତ୍ର ହୁଅନ୍ତୁ, ସ୍ଥାନୀୟ ଲୋକଙ୍କ ଅଜ୍ଞାତରେ କିଛି କରିପାରି ନଥାନ୍ତେ । ଆଇନ ଦୃଷ୍ଟିରୁ ସମସ୍ତ ତଥ୍ୟ ଉପକୂଳବାସୀଙ୍କୁ ଜଣାଇବାକୁ ହୋଇଥାନ୍ତା ଓ ଏହା କରିବା ପୂର୍ବରୁ ଜଙ୍ଗଲ ମହକୁମାର ଅଭିମତ ନେବାକୁ ହୋଇଥାନ୍ତା ।

ପ୍ରୋଟେକ୍‌ଟେଡ଼ ଫରେଷ୍ଟ (ସଂରକ୍ଷିତ) ବା ପାଳିତ ଜଙ୍ଗଲରେ ନିୟମ ଠିକ୍ ଓଲଟା । ଭୂମି ବୃକ୍ଷ ତତ୍ତ୍ୱ ଏଠାରେ କାର୍ଯ୍ୟ କରେ । ଭୂମି ରାଜସ୍ୱ ବିଭାଗ ଅଧୀନରେ ତ ବୃକ୍ଷ ଜଙ୍ଗଲ ବିଭାଗର । ଜଙ୍ଗଲ ଚାଲିଗଲେ ଜମି ରାଜସ୍ୱ ବିଭାଗର । ଏଣୁ ଏପ୍ରକାର

ଜମିର ଦାନଖଇରାତ ପାଇଁ ଆଇନର କୌଣସି ପ୍ରତିବନ୍ଧକ ନାହିଁ । ଆଇନକୁ ସାବାଡ଼ କରି ଏବେ ଆମ ପ୍ରଦେଶର ବହୁ ଉଜୁଡ଼ା, ପୂର୍ବ ଜଙ୍ଗଲ, ଜଙ୍ଗଲ ଜମି ବହୁ ବ୍ୟକ୍ତିବିଶେଷଙ୍କ ମାଲିକାନାକୁ ଚାଲିଯାଇଛି ବିଭିନ୍ନ ପ୍ରକାର ଆଳରେ । ଆମ ଲୋକପ୍ରିୟ ଗଣତନ୍ତ୍ରରେ 'ପ୍ରିୟତା' ସବୁଠାରୁ ଏପରିକି ମାନବିକତାଠାରୁ ଉର୍ଦ୍ଧ୍ୱରେ । ଯାହା ଦେଖିବାକୁ ମିଳିଲା ଉପକୂଳର ମହାବାତ୍ୟାରୁ ।

ଉପରୋକ୍ତ ବିଶ୍ଳେଷଣରୁ ଯାହା ସନ୍ଦେହମୁକ୍ତ ସ୍ୱରରେ କୁହାଯାଇପାରେ ଯେ, ବଙ୍ଗଳାଦେଶ ଶରଣାର୍ଥୀ (ଜଣା-ଅଜଣା) ପାରାଦୀପ ବନ୍ଦର, ଫସଫେଟ ସାର କାରଖାନା, ଭିନ୍ନ ଭିନ୍ନ ଛୋଟ ବଡ଼ ଶିଳ୍ପ, ଚିଙ୍ଗୁଡ଼ି ଚାଷ, ଧାନଚାଷ, ପାନ ଚାଷ, ଲୋକମାନଙ୍କ ଅନଧିକାର ବାସଢିହ ଇତ୍ୟାଦି ଆବାଦଦ୍ୱାରା ହଜାର ହଜାର ହେକ୍ଟର ଲୁଣା ଓ ସମୁଦ୍ରତୀର ଜଙ୍ଗଲ ଧ୍ୱଂସ ହୋଇ ପ୍ରକୃତିର 'ବୃହତ୍ ଦୁର୍ବିପାକ ବିରୋଧୀ ପରିକଳ୍ପନା' (The Great Anti-Disaster Planning) କୁ ସବୁଦିନ ପାଇଁ ଧ୍ୱଂସ କରାଯାଇ ଆମ ଉପକୂଳବାସୀଙ୍କୁ ମୃତ୍ୟୁର ବଳୟ ମଧ୍ୟକୁ ଠେଲି ଦିଆଯାଇଛି । ମିଥ୍ୟାରେ ଯଦି ଏବେ କେହି ପ୍ରଳୟର ହୁଆ ଉଠାଉଛି, ଉପକୂଳବାସୀ ଆଜି ଭୀତତ୍ରସ୍ତ ଓ ମାନସିକ ରୋଗଗ୍ରସ୍ତ । ଏହି ମାନସିକ, ଶାରୀରିକ ଯନ୍ତ୍ରଣାରେ, ବିଭୁକ୍ଷିତ କିଂ ନ କ୍ରୁରୋତି ପାପର ସୁଯୋଗ ନେଇ, ଉପକୂଳ ଝିଅ-ବୋହୂଙ୍କ ନାମରେ ଅପପ୍ରଚାର, ଆତ୍ମହତ୍ୟା, ମାନସିକ ଚିକିତ୍ସା ଭଳି ବହୁ ଖବର ସାମାଜିକ ସ୍ତରର ଆଜିସବୁ ସଚେତନଶୀଳ ନାଗରିକଙ୍କୁ ଆଣି ଦେଇଛି ଆତ୍ମ ଯନ୍ତ୍ରଣା । ଏ କ'ଣ ଗଣତନ୍ତ୍ର ? ସୀମିତ ଲୋକଙ୍କ ସ୍ୱାର୍ଥ, ଲକ୍ଷ ଲକ୍ଷ ଉପକୂଳବାସୀ, ଆବାଳବୃଦ୍ଧବନିତା ନରସଂହାର ପାଇଁ ହିଁ କାରଣ ହେଲା ଏବଂ ଯେଉଁମାନେ ରହିଗଲେ ମୃତ୍ୟୁଠାରୁ ଅଧିକ ଯନ୍ତ୍ରଣା ନେଇ । ଯେଉଁ ଜୀବ ପରିବେଶ ପ୍ରାକୃତିକ ପରିକଳ୍ପନା ବା Nature's Ecological Planning Gyenesis ବାତ୍ୟା ବିରୋଧୀ କାର୍ଯ୍ୟ କରୁଥିଲା, ତାହାକୁ ସତଚେଷ୍ଟା କଲେ ବି ପ୍ରାଦେଶିକ ସରକାର ଆମ ଉପକୂଳବାସୀଙ୍କୁ ଫେରାଇ ଦେଇପାରିବେ ନାହିଁ । ସରକାର ଗଛ ଲଗାଇ ବହୁ ବୃକ୍ଷର ତୋଟା ଛିଡ଼ା କରାଇପାରନ୍ତି ; କିନ୍ତୁ ପ୍ରାକୃତିକ ଲୁଣା ଜଙ୍ଗଲ ସୃଷ୍ଟି କରିପାରିବେ ନାହିଁ । ଜଙ୍ଗଲର ସ୍ରଷ୍ଟା ପ୍ରକୃତି, ମଣିଷ ନୁହେଁ । ଜଙ୍ଗଲ ଏକ ପାଳନୀ ବା ନର୍ସରୀ (Nursery) ଯେ ମଣିଷ ସହିତ କୋଟି କୋଟି ପ୍ରାଣର ଆଧାର । ଏଠାରେ ରାଜତନ୍ତ୍ର କାମ କରେ ନାହିଁ ।

ପୃଥିବୀ ଇତିହାସରେ ଏପରି ନରସଂହାର ବିରଳ । ନାଜି ଡିକ୍ଟେଟର, ହିଟ୍‌ଲରଙ୍କ ଇହୁଦୀମାନଙ୍କ ପ୍ରତି ମରଣାତ୍ମକ ଯନ୍ତ୍ରଣା (Jew-baiting) ଠାରୁ ଏହା ବଳିଗଲା ।

ଖୋଲା ମଞ୍ଚରେ ଏହାର ବିତର୍କ ହେଉ, ଦେଶ ଓ ବିଦେଶର ଲୋକ ଜାଣନ୍ତୁ ଯେଉଁମାନେ ଆମକୁ ପୋଷ୍ୟ ଭାବେ ପୁନର୍ଜନ୍ମ ଦେଇଛନ୍ତି । ଦୋଷୀଙ୍କୁ ଉପଯୁକ୍ତ ଶାସ୍ତି ଦିଆଯାଉ । ଯେଉଁ ଉପକୂଳବାସୀ ଥରେ ମରି ଶିଖିଛି, ସେ ଆଉ ଥରେ ମରିବାକୁ ଭୟ କରେ ନାହିଁ ।

ଉପକୂଳବାସୀଙ୍କ ପ୍ରତି ଏପ୍ରକାର ସଠତାର ପରିସମାପ୍ତି ଏତିକିରେ ଶେଷ ହୋଇନାହିଁ । ଯଦିଓ ୧୯୮୦ରୁ ଭାରତ ସରକାରଙ୍କ ଜଙ୍ଗଲ ସଂରକ୍ଷଣ ଅଧିନିୟମ (The Forest Conservation Act 1980) ପ୍ରତ୍ୟେକ ପ୍ରାଦେଶିକ ଯେକୌଣସି ଜଙ୍ଗଲ ଜମି ଉପରେ ପ୍ରୟୋଗାତ୍ମକ ବ୍ୟବସ୍ଥା କରାଯାଇଛି, ଆମ ଲୁଣା ଜଙ୍ଗଲ ଓ ସମୁଦ୍ରତୀର ଜଙ୍ଗଲ ଜମି ଉପରେ ଏହା ପ୍ରୟୋଗ କରାଗଲା ନାହିଁ କାହିଁକି ? ଏହି ଅଧିନିୟମ ବ୍ୟବସ୍ଥା ଅନୁଯାୟୀ ପ୍ରାଦେଶିକ ସରକାର ନିଜେ ହୁଅନ୍ତୁ କିମ୍ବା କେହି ବ୍ୟକ୍ତିବିଶେଷଙ୍କ ମାଧମରେ ଜଙ୍ଗଲ ଜମିର କୌଣସି ଅଂଶରେ ଜଙ୍ଗଲ ବିଜ୍ଞାନ ସମର୍ଥିତ କାର୍ଯ୍ୟ (Forestry Purpose) ବ୍ୟତୀତ ଅନ୍ୟ ଯେକୌଣସି କାର୍ଯ୍ୟ କରିବାକୁ ହେଲେ ଏହି ଅଧିନିୟମର ଧାରା ୨ ଅନୁଯାୟୀ କେନ୍ଦ୍ର ସରକାରଙ୍କର ଅନୁମୋଦନ ଅତ୍ୟନ୍ତ ଜରୁରୀ । ଏଥିରେ ବ୍ୟତିକ୍ରମ ଘଟିଲେ ସଂପୃକ୍ତ ବିଭାଗ କିମ୍ବା ବିଭାଗୀୟ ମୁଖ୍ୟ, ପ୍ରାଧିକାରୀ (Authority) ଏବଂ ପ୍ରତ୍ୟେକ ବ୍ୟକ୍ତି ଯେଉଁମାନଙ୍କ ସମୟରେ ଏହି ବ୍ୟବସ୍ଥାକୁ ଉଲ୍ଲଂଘନ କରାଯାଇଥିବ, ସେମାନଙ୍କ ବିରୁଦ୍ଧରେ ଏହି ଆଇନର ଧାରା ୩ (କ) ଏବଂ ଧାରା ୩ (ଖ) ରେ କାର୍ଯ୍ୟାନୁଷ୍ଠାନ ହେବା ସହିତ ଦଣ୍ଡବିଧାନର ବ୍ୟବସ୍ଥା ଅଛି । ଏଣୁ ଆମ ଉପକୂଳବର୍ତ୍ତୀ ଲୁଣା ଜଙ୍ଗଲ ଓ ସମୁଦ୍ରତୀର ଜଙ୍ଗଲରେ ଯେଉଁସବୁ କାର୍ଯ୍ୟରେ ହଜାର ହଜାର ହେକ୍ଟର ଜଙ୍ଗଲ ନଷ୍ଟ ହୋଇ ବ୍ୟକ୍ତିବିଶେଷଙ୍କ ଦ୍ୱାରା ଆବଦ୍ଧ ହୋଇଛି, ସେଥିମଧ୍ୟରୁ ଗୋଟିଏ ସୁଦ୍ଧା ବନ ବିଜ୍ଞାନ ସମ୍ମତ ବା ସମର୍ଥିତ (Forestry) କାର୍ଯ୍ୟ ନୁହେଁ । ଶୁଣିଲେ ଆଶ୍ଚର୍ଯ୍ୟ ଲାଗୁଛି ଫରେଷ୍ଟ କଞ୍ଜରଭେସନ ଆକ୍ଟ ୧୯୮୦ କିପରି ପ୍ରତ୍ୟେକ ରାଜ୍ୟମାନଙ୍କରେ କାର୍ଯ୍ୟ କରୁଛି ତାକୁ ଦେଖିବାକୁ ଜଣେ ଜଣେ ମୁଖ୍ୟ ବନ ସଂରକ୍ଷକ (Chief Conservator of Forests) କେନ୍ଦ୍ର ତରଫରୁ ପ୍ରତ୍ୟେକ ରାଜ୍ୟରେ ଅ୧ପକୂଳବାସୀ ଜାଣିବାକୁ ସୁଯୋଗ ପାଇବେ ଏହି ମହାବାତ୍ୟାର ସୂତ୍ରଧର କିଏ ? ମାନବ ନା ପ୍ରକୃତି ।

ଭାଗ୍ୟର ବିଡ଼ମ୍ବନାକୁ ଭାଗ୍ୟ ଉପରେ ଛାଡ଼ି ନଦେଇ ଠିକ୍ ଜାପାନିଜମାନେ ଦ୍ୱିତୀୟ ମହାଯୁଦ୍ଧ ପରେ ନେଇଥିବା ଚରମ ଶପଥ ପରି ଶପଥ ଆମକୁ ହିଁ ନେବାକୁ ହେବ । ସେମାନେ ବିଶ୍ୱବାସୀଙ୍କ କୌଣସି ପ୍ରକାର ସାହାଯ୍ୟକୁ ସେତେବେଳେ ଗ୍ରହଣ

ନକରି ନୂତନ ଦେଶ ଗଠନରେ ଲାଗିପଡ଼ି ବିଶ୍ୱ ସାମ୍ନାରେ ନିଜର ସ୍ଥିତିକୁ କେବଳ ସୁଦୃଢ଼ କରିପାରିଲେ ନାହିଁ; ବରଂ ସମସ୍ତଙ୍କଠାରୁ ଉର୍ଦ୍ଧ୍ୱରେ ନିଜକୁ ଅବସ୍ଥାପିତ କରି ପାରି ଲେ । ବିଶ୍ୱଯୁଦ୍ଧ ପରେ ପରେ ଜାପାନିଜ୍ ସରକାର ଦେଶର ବିଶେଷଜ୍ଞମାନଙ୍କର ଏକ ଅଧିବେଶନ ଡକାଇଥିଲେ, ଯେଉଁଥିରେ ମତପ୍ରକାଶ ପାଇଥିଲା ତାଙ୍କ ଦେଶର ପ୍ରତ୍ୟେକ ନାଗରିକ ଦେଶଗଠନ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟରେ ସମୟ ନଷ୍ଟ କରିପାରିବେ ନାହିଁ । ଏପରିକି ଖାଦ୍ୟ ପ୍ରସ୍ତୁତିରେ ମଧ ସମୟ ନଷ୍ଟ ନକରି କଞ୍ଚାଖାଦ୍ୟ ଖାଇବେ, କାରଣ କଞ୍ଚା ଖାଦ୍ୟ ଶରୀର ପକ୍ଷେ ଅହିତକର ନୁହେଁ । କଞ୍ଚା ଖାଦ୍ୟ ଓ ରନ୍ଧା ଖାଦ୍ୟ ମଧରେ କେବଳ ସ୍ୱାଦ ପରିବର୍ତ୍ତନ ଛଡ଼ା ଅନ୍ୟ କିଛି ପାର୍ଥକ୍ୟ ନୁହେଁ । ଏଣୁ ତାଙ୍କ ଦେଶର ଲୋକମାନଙ୍କ ପାଇଁ ହୋଟେଲମାନଙ୍କରେ ରନ୍ଧାଖାଦ୍ୟର ମୂଲ୍ୟ ବିଶେଷଭାବେ ବୃଦ୍ଧି କରିଦିଆଯାଇଥିଲା । କିନ୍ତୁ ବିଦେଶୀ ନାଗରିକମାନଙ୍କ ପାଇଁ ସେହି ଖାଦ୍ୟ ଉଚିତ ମୂଲ୍ୟରେ ଦିଆଯାଉଥିଲା ।

ଏଣୁ ଆମ ସରକାର ଏଥିରୁ ଶିକ୍ଷାଲାଭ କରିବା କଥା । ସରକାର ବାତ୍ୟା ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ (Relief) ଉପରେ ନିର୍ଭରଶୀଳ ହେବାକୁ ନଦେଇ ସେମାନଙ୍କ ଆତ୍ମନିଯୁକ୍ତିର ବ୍ୟବସ୍ଥା କରନ୍ତୁ । ସରକାରଙ୍କ ଦୁର୍ବଳତାରୁ ହିଁ ଆଜି ଉପକୂଳବାସୀ ଏହି ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଛନ୍ତି ଏବଂ ସେମାନଙ୍କ ସ୍ୱାଭିମାନକୁ ଲୁଣ୍ଠନ କରାଯାଇଛି । କେତେକ ଅପରିଣାମଦର୍ଶୀ ସରକାରୀ କର୍ମଚାରୀଙ୍କ ପାଇଁ ଏହା ଘଟିଛି ଓ ଏହାଠାରୁ ବଳି ବିପଦ ଯେ ନ ଘଟିବ, ତାହା କିଏ କହିବ । ତେଣୁ ଉପକୂଳ ବିପଦର ଦ୍ୱାର ଏବେ ଉନ୍ମୁକ୍ତ । ଏଣୁ ଯେଉଁ ସରକାରୀ କର୍ମଚାରୀ ସେହି ଅଞ୍ଚଳରେ ନିଯୁକ୍ତି ପାଇବେ ସେମାନେ ଅତ୍ୟନ୍ତ ସଚୋଟ, ନିଷ୍ପାପର ଏବଂ କାର୍ଯ୍ୟଦକ୍ଷ ଲୋକ ହେବା ଉଚିତ । ସେଠାକାର ପ୍ରତ୍ୟେକ କାର୍ଯ୍ୟ ପାଇଁ ସ୍ୱୟଂ ବିଭାଗୀୟ ସଚିବ ଓ ବିଭାଗୀୟ ମୁଖ୍ୟ ଉପକୂଳବାସୀ ତଥା ସରକାରଙ୍କ ପାଖରେ ଦାୟୀ ରହିବେ । ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ଗୋଟିଏ ଗୋଟିଏ ଅଭିଯୋଗ ପ୍ରକୋଷ୍ଠ ରହିବ । ସେହି ଅଭିଯୋଗ ପ୍ରକୋଷ୍ଠର ଶୁଣାଣି ପ୍ରତ୍ୟେକ ମାସ ଶେଷରେ ବିଭାଗୀୟ ମୁଖ୍ୟ ଓ ବିଭାଗୀୟ ସଚିବଙ୍କ ପ୍ରତିନିଧିମାନଙ୍କଦ୍ୱାରା ଶୁଣାଣି ହୋଇ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ । ସେହି କୁଆରିଆ ସ୍ୱର୍ଣ୍ଣକାତର ଅଞ୍ଚଳକୁ ପ୍ରଦେଶର ବଡ଼ ବଡ଼ ହାକିମମାନେ ଖୁବ୍ କମ୍ କିମ୍ବା ମୋଟେ ନିଯିବା ଦ୍ୱାରା ତଳିଆ ଦୁର୍ନୀତିପରାୟଣ କର୍ମଚାରୀମାନେ ଏହି ଅଞ୍ଚଳକୁ ଭୂସ୍ୱର୍ଗ ଭାବେ ଭାବିନେଲେ । ଏଣୁ ଏପ୍ରକାର ଦୁର୍ଦ୍ଦଶା ଆମକୁ ଘଟିଲା । ଏହା ବ୍ୟତୀତ ସରକାରଙ୍କର ପ୍ରତ୍ୟେକ କାର୍ଯ୍ୟ ବିଷୟରେ ମଧ ବିଭିନ୍ନ ଗଣମାଧମଦ୍ୱାରା ସ୍ଥାନୀୟ ଲୋକଙ୍କୁ ଅବହିତ କରାଯିବା ଅତ୍ୟନ୍ତ ବାଞ୍ଛନୀୟ । ଏହା ହିଁ ହେଲେ ଆମଲାତନ୍ତ୍ରକୁ

ଠିକ୍ ମାର୍ଗରେ ପରିଚାଳନା କରିବାର ଦକ୍ଷତା ସରକାରଙ୍କର ଅଛି ବୋଲି ଉପକୂଳବାସୀ ଛାଡ଼ିକି ପ୍ରତ୍ୟେକ ଦେଶବାସୀ ଜାଣିବାକୁ ସୁଯୋଗ ପାଇବେ ।

ଅତି ଦୁଃଖର ବିଷୟ, ଆମେ ଉପକୂଳବାସୀ ଦୁର୍ଦ୍ଦିନରେ ସଢୁଥିବାବେଳେ ଏବଂ ବିଦେଶୀ ସଦାବ୍ରତ ଉପରେ ନିର୍ଭର କରି ବଞ୍ଚୁଥିବାବେଳେ ଖୋଦ୍ ଆମ ପ୍ରଦେଶ ଏବଂ ଦେଶର ବିଳାସପୂର୍ଣ୍ଣ ହୋଟେଲମାନଙ୍କରେ ଐଶ୍ୱର୍ଯ୍ୟପୂର୍ଣ୍ଣ ଖାଦ୍ୟ ପରିବେଷଣ କରାଯାଉଛି । ଏହା ଲଜ୍ୟା ଛଡ଼ା ଅନ୍ୟକିଛି ହୋଇପାରେନା । ଏଣୁ ଆମ ଜନହିତୈଷୀ ସରକାରଙ୍କୁ ଅନୁରୋଧ ସେ ଆମ ଦେଶରେ ନହେଲେ ମଧ ପ୍ରଦେଶରେ ଥିବା ହୋଟେଲ ମାନଙ୍କରେ ଚାରିରୁ ଉର୍ଦ୍ଧ୍ୱ ପ୍ରକାରର ଖାଦ୍ୟ ଆମ ଦେଶବାସୀଙ୍କୁ ପରିବେଷଣ ଉପରେ ନିଷିଦ୍ଧ ଆଦେଶ ଜାରି କରନ୍ତୁ । ଦେଶ ବାହାରର ଲୋକଙ୍କ ପାଇଁ ଏହିସବୁ ନିଷେଧନାମା ଉଠାଇ ଦିଆଯାଇପାରେ । ଏଥିରୁ ଜଣାପଡ଼ିବ ସରକାରଙ୍କର ବାତ୍ୟାଞ୍ଚଳ ଲୋକଙ୍କ ପ୍ରତି ସହାନୁଭୁତିର ମାତ୍ରା କେତେଦୂର ।

ଯାହା ଦେଖାଯାଉଛି, ଉପକୂଳ ବାତ୍ୟାଞ୍ଚଳରେ ଦୁର୍ନୀତି ପ୍ରାୟ ଲାଗି ରହିଛି ଓ ଖବରକାଗଜମାନଙ୍କରେ ଏହା ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଉଠୁଛି । ଏଣୁ ପ୍ରାଦେଶିକ ସରକାର, ସରକାରୀ କର୍ମଚାରୀଙ୍କ ଦୁର୍ନୀତି ରୋକିବାରେ ସମ୍ପୂର୍ଣ୍ଣ ଅସମର୍ଥ । ଯଦି ଏହା ହୁଏ, ଆମ ଭାଗ୍ୟକୁ ନେଇ ସରକାର ଆଉ ଖେଳ ନଖେଳନ୍ତୁ । ଓଡ଼ିଶାରେ ଯେଉଁ ମହାପ୍ରଳୟ ଘଟିଗଲା, ଏହା କେବଳ ସରକାରୀ କଳର ନିଷ୍ପାପର ଓ ସାମାଜିକ ଦାୟିତ୍ୱହୀନତା ଯୋଗୁ ହିଁ ଘଟିଛି, ଯାହା ଉପରୋକ୍ତ ପର୍ଯ୍ୟାଲୋଚନାରୁ ପାଠକମାନେ ଜାଣିପାରିବେ ।

ଏଣୁ ଉପକୂଳବାସୀଙ୍କ ପୁନର୍ଗଠନ କାର୍ଯ୍ୟ ସ୍ୱୟଂ କେନ୍ଦ୍ର ସରକାର ନିଅନ୍ତୁ ଓ କେନ୍ଦ୍ରଶାସିତ ଅଞ୍ଚଳରେ ଦାୟିତ୍ୱ ତୁଲାଉଥିବା ପରି ମଧ ପ୍ରତ୍ୟେକ କାର୍ଯ୍ୟ କେନ୍ଦ୍ର ସରକାର ଏଠାରେ ତୁଲାନ୍ତୁ । ବୃକ୍ଷ ପ୍ରାଚୀର (Tree wall) ଠାରୁ ଆରମ୍ଭ କରି ପ୍ରତ୍ୟେକ ଗଠନମୂଳକ କାର୍ଯ୍ୟରେ ସ୍ଥାନୀୟ ଲୋକଙ୍କୁ ସଂପୃକ୍ତ କରାଇ ଭାରତର ପ୍ରତିରକ୍ଷା ଓ ନୌବାହିନୀ ମାଧ୍ୟମରେ ଏହିସବୁ କାର୍ଯ୍ୟ କରାଯାଇପାରିଲେ, ଏହାହିଁ ହେବ ଉତ୍କୃଷ୍ଟ ଓ ଯୁକ୍ତିଯୁକ୍ତ ପଦକ୍ଷେପ । ନଚେତ ଦୁର୍ନୀତିର ଘାଇ ଫିଟିଯିବ ଓ ପ୍ରାଦେଶିକ ସରକାର ଖାଲି ଅନୁସନ୍ଧାନ ଏବଂ ଅନୁସନ୍ଧାନରେ ହିଁ ବ୍ୟସ୍ତ ରହିବେ, ଆମେ ବାତ୍ୟା ବିପନ୍ନ ଲୋକେ ଦେଶ ଓ ବିଦେଶର ପୋଷ୍ୟପ୍ରାଣୀ (Adopted Lives) ହୋଇ ଇତିହାସ ସୃଷ୍ଟି କରିବୁ ସିନା, ମାରିନେବେ ମହାପାତ୍ରମାନେ, ଆମେ ଚାହିଁ ଚାହିଁ ହେବୁ ଜଳକା ।

❋ ❋ ❋

# ମହାପ୍ରଳୟ ଉପକୂଳ ଅଞ୍ଚଳରେ ଦୁର୍ନୀତିର କୁହୁକ

ଗତ ମହାବାତ୍ୟା ସମୟରେ ସରକାରୀ ମାଧ୍ୟମରେ ସାହାଯ୍ୟ ବିତରଣ ବ୍ୟବସ୍ଥା ଅତ୍ୟନ୍ତ ଦୁର୍ଭାଗ୍ୟ ଓ ଲଜ୍ଜାଜନକ ବିଷୟ ହୋଇପଡ଼ିଛି । ଏଣୁ ଏହି କାର୍ଯ୍ୟରେ ସରକାରୀ ଦକ୍ଷତା ସବୁ ଉପକୂଳବାସୀ ବେଶ ଉପଲବ୍ଧି କଲେଣି । ଏହା ଆଉ ପ୍ରାଦେଶିକ ପ୍ରସଙ୍ଗ ହୋଇନାହିଁ । ପ୍ରାଦେଶିକ ସରକାରଙ୍କ ଦକ୍ଷତା ଉପରେ ବିଶ୍ୱାସ ରଖି ଉପକୂଳବାସୀ ମସ୍ତିଷ୍କର ଭାରସାମ୍ୟ ହରାଇ ଆତ୍ମହତ୍ୟା କିମ୍ବା ଛୁଆ ବିକ୍ରି କିମ୍ବା ଅସାମାଜିକ କାର୍ଯ୍ୟରେ ଲିପ୍ତ ହେବା ସମ୍ବାଦ ପ୍ରଚୁର ମିଳିବାକୁ ସୁଯୋଗ ସୃଷ୍ଟି କରିବ ସିନା, ଉପକୂଳବାସୀଙ୍କ ଆତ୍ମ ଯନ୍ତ୍ରଣା ଲାଘବ ହେବ ନାହିଁ । ଏଠାରେ ସବୁ କ୍ଷେତ୍ରରେ ଦୁର୍ନୀତି । ଯାହା ଜଣାପଡୁଛି ଅମଲାତନ୍ତ୍ର ସରକାରଙ୍କୁ ଭୟ କରୁନାହିଁ । ନ୍ୟାୟରେ ହେଉ କି ଅନ୍ୟାୟରେ ହେଉ, କିଛି ଗୋଟିଏ ହେଲେ ସାମୂହିକ ଆନ୍ଦୋଳନ । ବେଙ୍ଗ ଗିଳିବାକୁ ବସିଲାଣି ନାଗକୁ । ଗଣତନ୍ତ୍ରର ସେବକ ଗିଳିବାକୁ ବସିଲାଣି ଗଣତନ୍ତ୍ରକୁ, ସରକାରକୁ । ଆମ ଗଣତନ୍ତ୍ର ଠିକ୍ ଚାଲିଛି ବେଠିକ ରାସ୍ତାରେ ।

ଯାହା ଜଣାପଡ଼ିଲାଣି କେବଳ ରିଲିଫ ସ୍କାମ କାହିଁକି, ଯେଉଁ ଗଠନମୂଳକ କାର୍ଯ୍ୟ ହେବ ଉପକୂଳ ଅଞ୍ଚଳରେ, ସେଥିରେ ସ୍କାମ ଚରିଯିବା ପାଇଁ ଶକ୍ତି ଏବଂ ଉପାୟ ସଞ୍ଚୟ କଲାଣି । ମୁର୍ଦାର ଅଣ୍ଟାର ଗାଞ୍ଜିଆରୁ ପଇସା ଗୋଟାଇବା ଲୋକ ଆମ ମଧ୍ୟରେ ବେଶ୍ ଅଛନ୍ତି ଏବଂ ସେ ବିଷୟ ସରକାରଙ୍କୁ ମୋଟେ ଅଜଣା ନାହିଁ । ଥୋକେ ଲୋକ ଏବେ ବେଶ୍ ଭାବୁଥିବେ, ମଝିରେ ମଝିରେ ଏପରି ବାତ୍ୟା ଆସନ୍ତା କି, ଆମ ପାଇଁ ଲାଲେଲାଲ, ଲାଲେଲାଲ । ସରକାରୀ ତନ୍ତ୍ର ଠିକ୍ ଚାଲିଛି ଆମ ମୁର୍ଦାର ଉପରେ ଗଣତନ୍ତ୍ରର ଶଗଡ଼ ଚଳାଇ ।

ଏବେ ଶୁଣିବାକୁ ମିଳୁଛି ବାତ୍ୟା ଅଞ୍ଚଳରେ ଉପକୂଳ ବୃକ୍ଷ ରୋପଣ କରିବା ପାଇଁ ହେକ୍ଟର ପିଛା ପଚାଶ ହଜାର ଟଙ୍କାର ଏଷ୍ଟିମେଟ ବା ପ୍ରାକ୍-କଳନ କେହି କେହି ବୃକ୍ଷରୋପଣ ଅଭିକରଣ ସଂସ୍ଥା (Agency) ଦେଲେଣି କିମ୍ବା ଦେବାପାଇଁ ଯୋଜନାରେ ଅଛନ୍ତି । ଏଣୁ ସରକାରଙ୍କୁ ମୋର ଅନୁରୋଧ ବାତ୍ୟା ଅଞ୍ଚଳରେ ପ୍ରତ୍ୟେକ କାର୍ଯ୍ୟ ପାଇଁ ଗୋଟିଏ ବିଶେଷଜ୍ଞ ମଣ୍ଡଳୀ ଗଠନ କରି ସେହିସବୁ କାର୍ଯ୍ୟ ଏହି ମଣ୍ଡଳୀ ଦ୍ୱାରା ଯାଞ୍ଚ କରାଯାଉ ଏବଂ ପ୍ରତ୍ୟେକ କାର୍ଯ୍ୟ ଜନସାଧାରଣଙ୍କ ଗୋଚରକୁ ଅଣାଯାଉ ।

ଜନସାଧାରଣଙ୍କ ଅଗୋଚରରେ ସବୁ ସରକାରୀ କାର୍ଯ୍ୟ ହେଉଥିବାରୁ ଆଜି ଉପକୂଳ ଅଞ୍ଚଳରେ ଏହି ଭୟାବହତା ଦେଖାଦେଇଛି । ଏଣୁ ଜନସାଧାରଣଙ୍କୁ ସବୁ ସମୟରେ ଓ ସବୁ କ୍ଷେତ୍ରରେ ଅଜ୍ଞ ବୋଲି ବିବେଚିତ କରା ନଯାଉ । ଓଡ଼ିଶାରେ ଯେଉଁଠାରେ ବୃକ୍ଷରୋପଣ କାର୍ଯ୍ୟ ହେଉଛି, ସେ ବାତ୍ୟାଞ୍ଚଳ ହେଉ କିମ୍ବା ସାଧାରଣ ଅଞ୍ଚଳ ହେଉ, ସେଠାକାର ବେକାର ଯୁବକମାନଙ୍କୁ ମଞ୍ଜି ସଂଗ୍ରହ କରିବା, ନର୍ସରୀରେ ଚାରା ଉତାରିବା ଏବଂ ଭିନ୍ନ ଭିନ୍ନ ଜମିରେ ବୃକ୍ଷରୋପଣ କାର୍ଯ୍ୟ କରିବାର ପ୍ରଶିକ୍ଷା ଓ ସେହିସବୁ ବୃକ୍ଷର ରକ୍ଷଣାବେକ୍ଷଣ କରିବାର ଦାୟିତ୍ୱ ସରକାର ବୃକ୍ଷରୋପଣ ସଂସ୍ଥା ବିଶେଷକରି ଜଙ୍ଗଲ ମହକୁମା ଅଫିସର ଓ କର୍ମଚାରୀମାଙ୍କ ମାଧ୍ୟମରେ ଦେଇ ଉପଯୁକ୍ତ ପରିବେଶ ସଚେତନଶୀଳ ନାଗରିକ ସୃଷ୍ଟି କରନ୍ତୁ । ସେହିସବୁ ଅଞ୍ଚଳର ଲୋକ ସରକାରରେ ଥିବା ଉପଦେଷ୍ଟା ମଣ୍ଡଳୀରେ ଅଂଶ ଗ୍ରହଣ କରନ୍ତୁ ଓ ପ୍ରତ୍ୟେକ କାର୍ଯ୍ୟରେ ଅଂଶୀଦାର ହୁଅନ୍ତୁ । ଏହା ହେଲେ ଦୁର୍ନୀତିଗ୍ରସ୍ତ ଏବଂ ମୁନାଫାଖୋର ରାଜସେବକ, ରାଜନେତା ଏବଂ ବ୍ୟବସାୟୀ ଗୋଷ୍ଠୀ ପୁନର୍ଗଠନ କାର୍ଯ୍ୟରୁ ଫାଇଦା ଉଠାଇବାକୁ ସକ୍ଷମ ହେବେ ନାହିଁ କି ସରକାର ଇନ୍‌କ୍ୱାରୀ ମାଧ୍ୟମରେ ଚୋରକୁ ଧରିବାପାଇଁ କାଳକ୍ଷେପଣ କରିପାରିବେ ନାହିଁ । ଏଣୁ ସଂପୃକ୍ତ ଅଞ୍ଚଳରେ ଯେଉଁ ପଇସାଟିଏ ଖର୍ଚ୍ଚ ହେବ, ତାହା ସେଠାକାର ଅଧିବାସୀଙ୍କ ଜ୍ଞାତରେ ସେମାନଙ୍କ ସ୍ୱାର୍ଥ ପାଇଁ ହିଁ ଖର୍ଚ୍ଚ ହେବାକୁ ସରକାର ସବୁମତେ ଯୋଜନା କରିବାକୁ ଉପକୂଳ ଅଧିବାସୀ ଚାହାନ୍ତି । ତା' ନହେଲେ ଠିକ୍ ଉପକୂଳ ଜଙ୍ଗଲ ଜମି ଉପକୂଳବାସୀଙ୍କ ଅଜ୍ଞାତରେ ବିଭିନ୍ନ ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ ହାତକୁ ହାତଛଡ଼ା ହେଲା ପରି ଏଠାରେ ଖର୍ଚ୍ଚ ହେବାକୁ ଥିବା ଅର୍ଥ ବାଟମାରଣା ହୋଇଯିବ ।

ଯାହା ଏବେ ଦେଖିବାକୁ ମିଳୁଛି, ଫରେଷ୍ଟ ଡିପାର୍ଟମେଣ୍ଟର ସୋସିଆଲ ଫରେଷ୍ଟ୍ରି ପ୍ରୋଜେକ୍ଟ, ଆଫରେଷ୍ଟ୍ରେସନ ସଂସ୍ଥା, ଫରେଷ୍ଟ କର୍ପୋରେସନ, ସଏଲ କଞ୍ଜରଭେସନ ଡିପାର୍ଟମେଣ୍ଟ ଏବଂ ବିଭିନ୍ନ ସରକାରୀ ଏବଂ ବେସରକାରୀ ପ୍ଲାଣ୍ଟେସନ ସଂସ୍ଥା ଏକପ୍ରକାର ଜମିରେ ଏକ କିସମର ଉଭିଦ ଲଗାଇବା ପାଇଁ ଏକର ପିଛା ଭିନ୍ନ ଭିନ୍ନ ହାରରେ କୋଟି କୋଟି ଟଙ୍କା ଗଛ ଲଗାଇବାରେ ଖର୍ଚ୍ଚ କରୁଛନ୍ତି, ଯାହାରକି ପରୀକ୍ଷା ନିରୀକ୍ଷା ନହୋଇ ଭିନ୍ନ ଭିନ୍ନ ସଂସ୍ଥା ଏହି କାର୍ଯ୍ୟ ଲଗାମ ଛଡ଼ା ଭାବେ କରିଚାଲିଛନ୍ତି । କେଉଁଠାରେ କେତେ ଟଙ୍କା ଖର୍ଚ୍ଚ ହେଉଛି ଏବଂ କେତେ ଗଛ ଲାଗୁଛି ଓ କେତେ ପ୍ରକୃତରେ ବଞ୍ଚୁଛି, ତାହା ପ୍ରଦେଶର ଜନସାଧାରଣ ଜାଣୁନାହାନ୍ତି । ଏହାଦ୍ୱାରା ଦୁର୍ନୀତିକୁ ପ୍ରୋତ୍ସାହିତ କରାଯାଉଛି । ଏଣୁ ସରକାରଙ୍କୁ ଅନୁରୋଧ ଏଥିରେ ଲଗାମ ଆଣନ୍ତୁ

ଏବଂ ସମସ୍ତଙ୍କ ପାଇଁ ଗୋଟିଏ ପ୍ରକାର ପ୍ରାକ-କଳ୍ପନ ଭିନ୍ନ ଭିନ୍ନ ଜମି ଓ ଉଦ୍ଭିଦ ପାଇଁ ଧାର୍ଯ୍ୟ କରାଯାଇ ଦୁର୍ନୀତିଗ୍ରସ୍ତ ବ୍ୟକ୍ତିବିଶେଷଙ୍କୁ ଏହି ସୁଯୋଗରୁ ବଞ୍ଚିତ କରାଯାଉ । ଏହି ସାହାଣମେଲା ବୃକ୍ଷରୋପଣ କାର୍ଯ୍ୟରେ ଲଗାମ ନଆଣିଲେ, ଟଙ୍କା ତ ସୁଅରେ ଭାସିଯିବ, କିନ୍ତୁ ଗଛଲଗା ଭୂଭାଗ ଆମ ପ୍ରଦେଶର ଭୂଭାଗକୁ ବଳିପଡ଼ିବ ଓ ସରକାରୀ ଗୁମାସ୍ତାମାନେ ସରକାରଙ୍କୁ ବୋକା ବନାଇ ସରକାରୀ ସଂସ୍ଥାରେ ନାଲିବତୀ ଜଳାଇଦେବେ ।

ଏଠାରେ ସରକାରଙ୍କୁ ଅନୁରୋଧ କରାଯାଇପାରେ ଯେ, ସେ ପ୍ରତ୍ୟେକ ବିଷୟ ପରୀକ୍ଷା ନିରୀକ୍ଷା (Review) କଲାପରେ ଜଙ୍ଗଲ ବିଭାଗର ଉପରସ୍ତରର ପରିବାରରେ ଯେତେ ଇଚ୍ଛା ସେତେ ସଂଖ୍ୟା ବଢ଼ାଇ ଲୋକପ୍ରିୟତା ଅର୍ଜନ କରନ୍ତୁ । କିନ୍ତୁ ତାଙ୍କ ସମସ୍ତ କାର୍ଯ୍ୟକ୍ରମ ଜନହିତୈଷୀ ହେବା ବାଞ୍ଛନୀୟ । ଜଙ୍ଗଲ ବିଭାଗର ପରିବାର ସୀମିତ ଥିବାବେଳେ ପ୍ରଦେଶର ଜଙ୍ଗଲ କେତେ ପ୍ରତିଶତ ଥିଲା ଓ ଜଙ୍ଗଲଗୁଡ଼ିକର ଘନତ୍ୱ କିପରି ଥିଲା ଏବଂ ଏବେ ଜଙ୍ଗଲ ଉପରସ୍ତରର ପରିବାରର ବୃଦ୍ଧି ହେବା ପରେ ଜଙ୍ଗଲଗୁଡ଼ିକର ଅବସ୍ଥା, ଘନତ୍ୱ ଏବଂ ଆୟତନ କିପରି ଅଛି, ତାହା ଆମ୍ଭ ଜନପ୍ରିୟ ସରକାରଙ୍କର ଲକ୍ଷ୍ୟରେ ରହିବା ଜନସେବାର ଏକ ଅଂଶବିଶେଷ ମାତ୍ର । ସେହିପରି ଯେଉଁଠାରେ ହାତ ଚିକ୍କଣ କରିବାର ସମ୍ଭାବନା ଅଛି, ସେଠାରେ ସଚ୍ଚୋଟ, ଦକ୍ଷ ଅଫିସର ଓ କର୍ମଚାରୀମାଙ୍କର ପୂର୍ବ ରେକର୍ଡ଼କୁ ପରୀକ୍ଷାନିରୀକ୍ଷା କରି ଅବସ୍ଥାପିତ ହେବା ମଧ ଅଭିନନ୍ଦନୀୟ ଏବଂ ଯେଉଁଠାରେ ଦୁର୍ନୀତି ହେବାର ଖୁବ୍ ସମ୍ଭାବନା ଅଛି ଓ ଚାଲିଛି, ତାହା ସରକାରଙ୍କୁ ବେଶ୍ ଜଣାଥିବ, ସେଠାରେ ଦୁର୍ନୀତିର ଛିଟା ଥିବା ଓ ବହୁ ଦିନଧରି ଗୋଟିଏ ସ୍ଥାନରେ କିମ୍ବା ଗୋଟିଏ ସଂସ୍ଥାରେ ଉପାୟବନ୍ତ (Resoruceful) ବା ପାରିବାପଣିଆ ଅଫିସର ଓ କର୍ମଚାରୀଙ୍କୁ ଅବସ୍ଥାପିତ ରଖିଲେ ଯାହା ଚାଲିଛି ତାହା ତ ଚାଲୁଥିବ ଓ ଚାଲିବାକୁ ଅଧିକ ସୁଯୋଗ ସୃଷ୍ଟି ହେବ । କିନ୍ତୁ ସରକାରଙ୍କ ପ୍ରତି ସନ୍ଦେହର ବଳୟ ଘନୀଭୂତ ହେବ ।

ଏଣୁ ସରକାରଙ୍କୁ ଅନୁରୋଧ ସେ ଦୟା ପରବଶ ହୋଇ ଆମ୍ଭ ମହାପ୍ରଳୟର ଅଧିବାସୀଙ୍କୁ ମହା-ଦୁର୍ନୀତିର ସ୍ରୋତରେ ଭସାଇ ନଦେଇ ନିଜେ ମହାଜଳକା ନ ସାଜନ୍ତୁ ଓ ଆମ୍ଭ ସମ୍ବନ୍ଧୀୟ ସମସ୍ତ ବିଷୟ ଆମ୍ଭକୁ ଜାଣିବାକୁ ସୁଯୋଗ ଦିଅନ୍ତୁ -ଏତିକି ବିନତି ମାତ୍ର ।

❋ ❋ ❋

# ବାତ୍ୟା ବଳୟରେ ଉପକୂଳ ରାଜପଥ : ବନାମ ଲବଣ ଜଳଯନ୍ତା

ବାଲେଶ୍ୱରର ଚନ୍ଦନେଶ୍ୱରଠାରୁ ଗୋପାଳପୁର ପର୍ଯ୍ୟନ୍ତ ଏକ ସୁଦୀର୍ଘ ଉପକୂଳ ରାଜପଥ ନିର୍ମାଣ ଯୋଜନା ସହିତ ବ୍ୟାପକ ଉପକୂଳ ବନୀକରଣ ପ୍ରସ୍ତାବ ଆମ ସରକାରଙ୍କ ଯୋଜନାର ଅନ୍ତର୍ଭୁକ୍ତ । କିନ୍ତୁ ଏହା କେତେ ନିରାପଦ, ଆଲୋଚ୍ୟର ବିଷୟବସ୍ତୁ ।

(୧) 'ଏହି ଉପକୂଳ-ରାଜପଥ' ନିର୍ମାଣ ଯୋଜନା ଏକ ଭୟାନକ ଓ ମରଣାତ୍ମକ ଭାଗ୍ୟ ଏବଂ ଭବିଷ୍ୟତ ଉପକୂଳବାସୀଙ୍କ ପାଇଁ ସୃଷ୍ଟି କରିବ । ଉପକୂଳ ଅଞ୍ଚଳର ଭୌଗୋଳିକ ଅବସ୍ଥା, ଜଳବାୟୁ ଏବଂ ମୃତ୍ତିକାର ସ୍ପର୍ଶକାତର ବିଷୟ ବିଚାରକୁ ନନେଇ ଯେକୌଣସି ଯୋଜନା କଲେ ଏହା ଚିଙ୍ଗୁଡ଼ି ଚାଷ ଫାଇଦା ଯୋଜନା ଠାରୁ ବଳି ପ୍ରମାଦ ସୃଷ୍ଟି କରି ଉପକୂଳ ସଭ୍ୟତାକୁ ଚିରଦିନ ପାଇଁ ଧୂଳିସାତ୍ କରିଦେବ ଏବଂ ଏହା ସମୁଦ୍ରର ଏକ ଅଂଶବିଶେଷ ହୋଇ ରହିଯିବ । ଗୋଟିଏ ନଦୀର ପ୍ରବଳ ବନ୍ୟାସ୍ତର (High Flood Level)କୁ ଦୃଷ୍ଟିରେ ରଖି ନଦୀବନ୍ଧ ଯୋଜନା, ଆନିକଟ, ପୋଲ ଏବଂ ତଟବନ୍ଧ ନିର୍ମାଣ କାର୍ଯ୍ୟ କରାଯାଇପାରେ, କିନ୍ତୁ ମଣିଷର ଏପରି ପରିକଳ୍ପନା ବହୁ ସମୟରେ ପ୍ରକୃତି ପାଖରେ ଭୁଲ ପ୍ରମାଣିତ ହୋଇ ବନ୍ୟା ପ୍ରକୋପରେ ବହୁ ଧନଜୀବନ କ୍ଷୟକ୍ଷତିର ପ୍ରମାଣ ଆମ ପାଖରେ ଅଭାବ ନାହିଁ । ଏଣୁ ସମୁଦ୍ରର ଜୁଆରକୁ ବନ୍ଧ ଦେଇ ସବୁସମୟରେ ଅଟକାଇବା ମଣିଷପକ୍ଷେ ଏହା ଏକ ହାସ୍ୟାସ୍ପଦ କାର୍ଯ୍ୟ । ଏଣୁ ଆମ ରାଜନୀତିଜ୍ଞ ଏବଂ ଯୋଜନା ପ୍ରଣୟନକାରୀ ମହୋଦୟମାନେ ପ୍ରଥମେ ଜାଣିବା ଉଚିତ ସମୁଦ୍ର ବକ୍ଷରେ କେଉଁ କାରଣରୁ ପ୍ରବଳ ପ୍ରତାପୀ ଜୁଆର ସୃଷ୍ଟି ହୋଇ କୂଳଲଂଘି ଭୂଭାଗକୁ ମାଡ଼ିଆସେ । ଏହାର ପ୍ରଧାନ କାରଣ ହେଲା ସମୁଦ୍ର ବକ୍ଷରେ ଲଘୁଚାପ ବଳୟର ଆକାର ଓ ପ୍ରକାର । ସେ କେତେବେଳେ କେଉଁ ରୂପ ଧାରଣ କରିବ, ତାହା ଆମେ ଆକଳନ କରିବା କିପରି ? ସମୁଦ୍ର ବକ୍ଷରେ ଲଘୁଚାପ ବଳୟ ସୃଷ୍ଟ ସ୍ଫୀତ ଜଳରାଶିର ଉଚ୍ଚତା ଓ ଭୂଭାଗ ମଧ୍ୟକୁ ପ୍ରବେଶ କରିବାର ଘଣ୍ଟା ପ୍ରତି ବେଗ ବା ତୀବ୍ରତା ଉପକୂଳ ରାଜପଥ ନହେବା ପୂର୍ବରୁ ଏହାର ପ୍ରବଳ ଜୁଆର ସ୍ତର

(High Tide Level) ଜୁଆରର ବେଗ ସରକାର ନିର୍ଣ୍ଣୟ କରିବେ କିପରି ? ଏଠାରେ ପ୍ରଶ୍ନ ଉଠୁଛି ଏହି ଉପକୂଳ ରାଜପଥ ବା ଜୁଆରର ଆଡ଼ି ବନ୍ଧର ଉଚ୍ଚତାର ନିର୍ଣ୍ଣୟାତ୍ମକ ସୂତ୍ର କ'ଣ ହେବ ? ଏହି ଜୁଆର ଆଡ଼ିବନ୍ଧର ଉଚ୍ଚତା ଯାହା ହେଲେ ମଧ୍ୟ ତାକୁ ଅତିକ୍ରମ କରି ଜୁଆର ପାଣି କ'ଣ କେବେ ସ୍ଥଳଭାଗ ଅର୍ଥାତ ଜନବସତି ମଧ୍ୟକୁ ପ୍ରବେଶ କରିବ ନାହିଁ, ଯଦି କରେ ତାହାଲେ ଉପକୂଳବାସୀଙ୍କ ଦୁର୍ଦ୍ଦଶା କ'ଣ ହେବ ? ଜୁଆର ପାଣି ଏହି 'ଉପକୂଳ- ରାଜରାସ୍ତା' ଟପି ଜନବସତି ମଧ୍ୟକୁ ଥରେ ପ୍ରବେଶ କଲେ ସମୁଦ୍ରକୁ ଫେରି ଆସିବାକୁ ସକ୍ଷମ ହେବ ତ ? ଏହି ଉପକୂଳ ରାଜରାସ୍ତା ଏହାର ପ୍ରତିବନ୍ଧକ ହେବ ନାହିଁ କି ? ଗଲା ବାତ୍ୟା ପରେ ଚିଙ୍ଗୁଡ଼ି ଘେରିଗୁଡ଼ିକ ଜୁଆର ପାଣିକୁ ସମୁଦ୍ରକୁ ଫେରିଯିବାକୁ ନଦେଇ ଯେଉଁ ପରିସ୍ଥିତି ସୃଷ୍ଟି କରି ଧନଜୀବନ ସଂହାରକ ହେଲେ ଠିକ୍ ସେହିପରି ଏହି ଉପକୂଳ ରାଜପଥ ବହୁ ବହୁ ଗୁଣରେ ସମୁଦ୍ର ଜୁଆର ଜଳକୁ ସମୁଦ୍ରକୁ ଯିବାକୁ ନଦେଇ ସମସ୍ୟା ସୃଷ୍ଟି କରିବ । ଏହାର ପରିଣାମ ସ୍ୱରୂପ ସମୁଦ୍ରର ବିପରୀତ ଦିଗରେ ଓ ଏହି ରାଜରାସ୍ତାକୁ ଲାଗି ବିସ୍ତୀର୍ଣ୍ଣ ସ୍ଥଳଭାଗରେ ଏକ ମନୁଷ୍ୟକୃତ ହ୍ରଦ ସୃଷ୍ଟି ହେବ ଓ ଉପକୂଳ ସଭ୍ୟତାକୁ ଚିରଦିନ ପାଇଁ ଏହି ହ୍ରଦରେ ବିଲୀନ କରି ଏକ ମର୍ମନ୍ତୁଦ ବିଶ୍ୱଇତିହାସ ସୃଷ୍ଟି କରିବ । ତାହେଲେ ଆମ ସରକାର ଏବଂ ରାଜନେତା ବୃନ୍ଦ ଏପରି ଏକ ଉପକୂଳ ରାଜପଥ ଅର୍ଥାତ ପ୍ରକୃତି ବିରୋଧୀ ରାଜପଥ ସୃଷ୍ଟି କରି ଉପକୂଳବାସୀଙ୍କୁ ସବୁଦିନ ପାଇଁ କ'ଣ ମୃତ୍ୟୁର ଜଳ ବଳୟ ମଧ୍ୟକୁ ଠେଲିଦେବାକୁ ଚାହାନ୍ତି ? ଏଣୁ ଏପରି ଏକ ମରଣାତ୍ମକ ଲବଣ ଜଳ ଯନ୍ତା ବନାମ ଉପକୂଳ ରାଜପଥ ନିର୍ମାଣ କାର୍ଯ୍ୟ ହେବା ପୂର୍ବରୁ ଖୋଲା ମଞ୍ଚରେ ଏ ବିଷୟରେ ବିତର୍କ ହେଉ ଏବଂ ପ୍ରତ୍ୟେକ ଉପକୂଳବାସୀଙ୍କ ମତାମତ ନିଆଯାଉ ।

ଦ୍ୱିତୀୟ ବିଷୟଟି ହେଲା, ପ୍ରଧାନମନ୍ତ୍ରୀଙ୍କୁ ସାଂସଦମାନଙ୍କର ଦେଇଥିବା ବ୍ୟାପକ ବନୀକରଣ ଯୋଜନା ପ୍ରସ୍ତାବ । ଏହା ସ୍ୱାଗତଯୋଗ୍ୟ, କିନ୍ତୁ ଉପକୂଳ ରାଜପଥ ନିର୍ମାଣ ନକରାଇ ଏହା କରାଯିବା ବିଧେୟ । ଜୁଆରିଆ ଲୁଣା-ଉପକୂଳ ମଙ୍ଗଳ (Mangrove) ବଣ ଏକ ସ୍ପର୍ଶକାତର ଜଳବାୟୁ ଓ ମୃତ୍ତିକାରେ ଗଢ଼ି ଉଠେ । ନଜାଣି ଏହି ଉଦ୍ଭିଦ ଜଗତ ସହିତ ଖେଳ ଖେଳିଲେ ଚିଙ୍ଗୁଡ଼ି ଚାଷରେ ସବୁ ଲୁଣା ଜଙ୍ଗଲ ନଷ୍ଟ ହୋଇଯିବା ପରି ଏହି ରାଜପଥ ଯୋଗୁ ପ୍ରାକୃତିକ ଉପାୟରେ ଏ ଜଙ୍ଗଲ ସୃଷ୍ଟି ହେବା ସ୍ୱପ୍ନ ହୋଇଯିବ । ଏହା ସହିତ କୃତ୍ରିମ ଉପାୟରେ ମଧ୍ୟ ଜଙ୍ଗଲ ନୁହେଁ ତ ବୃକ୍ଷ ତୋଟା ବି ସମ୍ଭବପର ହେବ ନାହିଁ । ଏହାର କାରଣ ହେଲା ଉପକୂଳବର୍ତ୍ତୀ ଲୁଣା

ଜଙ୍ଗଲରେ ସବୁ ମଙ୍ଗଳ ଉଦ୍ଭିଦ ଜନ୍ମୁଥିବା ଜୁଆର ପାଣି ମାଡୁଥିବା ଛାଡୁଥିବା ପ୍ରାକୃତିକ ପ୍ରକ୍ରିୟାରେ ସୁନ୍ଦର ଭାବେ ଗଢ଼ିଉଠନ୍ତି ଓ ପ୍ରତ୍ୟେକ ଏକକ ଜୁଆର ପାଣିର ସ୍ପିଡବ୍ରେକର ଭାବେ କାର୍ଯ୍ୟ କରନ୍ତି । ଏମାନେ ସବୁ କ୍ଷେତ୍ରରେ ଜୁଆର ଜଳର ଗତିକୁ ପ୍ରତିହତ କରି ସମୁଦ୍ରକୁ ପୁନର୍ବାର ଏହି ଜଳକୁ ଫେରିଯିବାକୁ ଉପାୟର ସୂତ୍ରଧର ହୁଅନ୍ତି । ଏହି ଲୁଣା ଉଦ୍ଭିଦମାନଙ୍କର ଧର୍ମ ହେଲା, (They tolerate inundation, but not stagnation of salt wter) ଏମାନେ ସମୁଦ୍ର ଜଳର ଜୁଆର ଓ ଭଟ୍ଟାର ପ୍ରାକୃତିକ ପ୍ରକ୍ରିୟା ସହିତ ପୂର୍ଣ୍ଣମାତ୍ରାରେ ଜଡ଼ିତ ଥାଇ ଏବଂ କୋଟି କୋଟି ବର୍ଷର ବିବର୍ତ୍ତନ(Evoluation) ପ୍ରକ୍ରିୟା ମାଧ୍ୟମରେ ଏବର ସ୍ଥିତିରେ ପହଞ୍ଚିଛନ୍ତି । ରାଜ୍ୟ ସରକାର କୃତ୍ରିମ ଉପକୂଳ ରାଜପଥ ନିର୍ମାଣ କରି ଏହି ଜୁଆର ଜଳ ପ୍ରତିରୋଧ ବନ୍ଧ ବାନ୍ଧିଦେଲେ ସଂପୃକ୍ତ ବନ୍ଧ ପାର୍ଶ୍ୱବର୍ତ୍ତୀ ସମୁଦାୟ ସ୍ଥଳଭାଗରେ ଜମି ରହିଥିବା ଲୁଣା ଜଳ ସେହି ମୃତ୍ତିକାକୁ ଉଦ୍ଭିଦମାନଙ୍କର ଦରକାରରୁ ଅଧିକ ଲବଣାକ୍ତ କରିଦେବ, ଯାହାକୁ (Hyper salination) କୁହାଯାଏ । ମୃତ୍ତିକାର ଏହି ଅବସ୍ଥା ଆସିଗଲେ ପ୍ରାକୃତିକ ମଙ୍ଗଳ ଉଦ୍ଭିଦମାନେ ସ୍ୱୟଂଲୋପ ପାଇଯିବେ ଓ ସେଠାରେ ଗଛ ଲଗାଇ ନୂତନ ଲୁଣା ଜଙ୍ଗଲ ସୃଷ୍ଟି କରି ହେବ ନାହିଁ । ଗୁଜୁରାଟର କଚ୍ଛ ଉପକୂଳ (Rann of Kutch) ର ୯୦୦୦ ବର୍ଗମାଇଲ ଓ ରାଜସ୍ଥାନର ଥର ମରୁଭୂମି ପରି ଆମର ଗୋପାଳପୁରଠାରୁ ଚନ୍ଦନେଶ୍ୱର ପର୍ଯ୍ୟନ୍ତ ଏକ ସୁଦୀର୍ଘ ଲବଣାକ୍ତ ମରୁଭୂମି ସୃଷ୍ଟି ହେବ । ଏଣୁ ବର୍ତ୍ତମାନର ଦୁଷ୍କର୍ମ ଆମ ଆଶୁ ବଂଶଧରଙ୍କ ପାଇଁ ସୃଷ୍ଟି କରିଯିବ ଏକ ଦୁଃଖଦ ଭବିଷ୍ୟତ ।

ଉପକୂଳ କନ୍ଧା ବା ଜୁଆରିଆ ପଟୁଭୂମିରେ ଚିଙ୍ଗୁଡ଼ି ଚାଷଦ୍ୱାରା ସମୁଦାୟ ଉପକୂଳ ମୃତ୍ତିକା ଅତ୍ୟଧିକ ଲବଣ ବିଷାକ୍ତ ହୋଇ ସେଠାରେ ଜନ୍ମୁଥିବା ସ୍ଥାନୀୟ ଉଦ୍ଭିଦମାନେ ବଞ୍ଚିବାକୁ ସକ୍ଷମ ହେଉନାହାନ୍ତି । କାରଣ ଚିଙ୍ଗୁଡ଼ି ଘେରି ହେଉ କିମ୍ବା ଯେକୌଣସି ଘେରି ହେଉ ସେମାନେ ଲୁଣ ପଟାଳି ପରି କାର୍ଯ୍ୟ କରନ୍ତି । ପୂର୍ବେ ଏହି ଅଞ୍ଚଳରେ ଦେଖାଯାଉଥିବା ପିଜୁଳି ବଗିଚା ଏବେ ଏହି କାରଣରୁ ସ୍ୱୟଂ ଲୋପ ପାଇଗଲେଣି । ପିଜୁଳି ଏକ ସ୍ପର୍ଶକାତର ଉଦ୍ଭିଦ । ସେହିପରି ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳରେ ଧାନ ଫଳିବା ମଧ୍ୟ କମି କମି ଆସୁଛି । ଏଣୁ ଥରେ ଜମି ଲୁଣା ଚରିଗଲେ ଓ ମା' ମୃତ୍ତିକା ବା (Mother earth) ନଷ୍ଟ ହୋଇଗଲେ, ସେହି ଜମିର ମୃତ୍ୟୁ ଘଟେ ଏବଂ ତାକୁ ପୁନରୁଦ୍ଧାର କରିବା ସମ୍ଭବ ହୁଏ ନାହିଁ । ଏଣୁ ଉପକୂଳ ଭୌଗୋଳିକ ରୂପରେଖ ନଜାଣି ଓ ସେହି ମୃତ୍ତିକା ଏବଂ ଜଳବାୟୁ ସମ୍ବନ୍ଧରେ ଅଭିଜ୍ଞତା ବା ଜ୍ଞାନ

ନଥାଇ ରାଜନୈତିକ ବିଷାରଦମାନେ,ପେଷାଦାରମାନେ କୌଣସି ଗୋଟିଏ ପରିକଳ୍ପନା କରିଦେଲେ ଉପକୂଳବାସୀଙ୍କ ଦୁଃଖ ଲାଘବ ହେବ ନାହିଁ; ବରଂ ଦୁର୍ଦ୍ଦଶାର ବଳୟ ବହୁ ଭାବରେ ବଢ଼ିଯିବ । ଏଣୁ ଲୁଣା ଜଙ୍ଗଲ ସଂରକ୍ଷଣ ଏହାର ଅଭିବୃଦ୍ଧି ଆମକୁ ତିନୋଟି ପ୍ରଧାନ କାରଣରେ ସହାୟକ ହେବ । (୧) ଲୁଣା ଜଙ୍ଗଲ ସମୁଦ୍ର ବକ୍ଷରୁ ସୃଷ୍ଟ ଲଘୁଚାପ ବାୟୁ ରୋଧକ । (ଏହି ବାୟୁ ବଳୟର ଏକ ମ୍ୟାପ (ନକ୍ସା) ପାଠକମାନଙ୍କ ଜାଣିବା ପାଇଁ ଏହି ପ୍ରବନ୍ଧରେ ଦିଆଗଲା ।) (୨) ଜୁଆର ଜଳରୋଧକ— ଜୁଆର ଜଳକୁ କ୍ରମାଗତ ଭାବେ ବାଧା ସୃଷ୍ଟି କରି ଭୂ-ଭାଗ ମଧ୍ୟକୁ ଅଗ୍ରଗତି କରିବାକୁ ଦିଏ ନାହିଁ । (୩) ଲୁଣା-ଜୈବମଣ୍ଡଳ (Bio sphere Reseve) ର ମାତୃକା ବା 'ଧାତ୍ରୀ' ।

ଜୁଆର ଜଳ ମଣିଷର ପରିକଳ୍ପନାର ବନ୍ଧରେ ଅର୍ଥାତ ଗୋଟିଏ ସ୍ଥାନରେ ବାଧାପ୍ରାପ୍ତ ହେବା ଓ ପ୍ରକୃତିର ଓ ପରିକଳ୍ପନାର ଲୁଣା ଜଙ୍ଗଲରେ ବାରମ୍ବାର ବାଧାପ୍ରାପ୍ତ ହେବା ମଧ୍ୟରେ ବହୁ ଅସାମଞ୍ଜସ୍ୟ ରହିଛି । ଏଣୁ ଏକ ଜୈବମଣ୍ଡଳକୁ ଧୂଳିସାତ୍ କରିବା ପୂର୍ବରୁ ଆମ୍ଭଙ୍କୁ ଲକ୍ଷ ଥର ଅତୀତ - ବର୍ତ୍ତମାନ- ଭବିଷ୍ୟତକୁ ବିଚାର କରିବାକୁ ହେବ ।

ବର୍ତ୍ତମାନ ଉପକୂଳ ଅଞ୍ଚଳରେ ମୁଖ୍ୟ କାମ ହେଲା ଚିଙ୍ଗୁଡ଼ି ଚାଷ, ପାନଚାଷ, ଧାନ ଚାଷ ଓ ସବୁ ପ୍ରକାର ଆବାଦଭୁକ୍ତ ଜମିକୁ ଅଧିକାରମୁକ୍ତ କରି ୧୯୫୨ର ଜମିଦାର ଉଚ୍ଛେଦର ସ୍ଥିତାବସ୍ଥାକୁ ଫେରାଇ ଆଣିବାକୁ ହେବ ଏବଂ ପ୍ରକୃତିଦତ୍ତ ବ୍ୟବସ୍ଥାକୁ ଏହି ପ୍ରକାରେ ସୁଦୃଢ଼ କରିବାକୁ ହେବ ।

(୧) ଏହିସବୁ ଅଞ୍ଚଳକୁ ରିଜର୍ଭ ଫରେଷ୍ଟ ବା ଆରକ୍ଷିତ ବନ (Reserve Forest) ଭାବେ ଘୋଷଣା କରି ସେଥିରେ ଓଡ଼ିଶା (ଜଙ୍ଗଲ) ଅଧିନିୟମ ୧୯୭୨ (Orissa Forest Act 1972) ଏବଂ ୧୯୮୦ ମସିହାରେ ଫରେଷ୍ଟ କଞ୍ଜରଭେସନ ଆକ୍ଟ ବା ଅରଣ୍ୟ ସଂରକ୍ଷଣ ଅଧିନିୟମ ୧୯୮୦କୁ କଡ଼ାକଡ଼ି କାର୍ଯ୍ୟକାରୀ କରିବା ।

(୨) ଏହିସବୁ ଅଞ୍ଚଳରେ ସୁସ୍ଥ ଜୀବ ଭୌଗୋଳିକ ପରିବେଶ ମର୍ଯ୍ୟାଦା (Healthy Ecological Environmental Status) ବଜାୟ ରଖିବାକୁ ହେବ, ଯଦ୍ଦ୍ୱାରା ଲବଣ ଜୈବମଣ୍ଡଳ (Biosphere) ସମ୍ପୂର୍ଣ୍ଣ ସ୍ୱାଧୀନ ଭାବେ କାର୍ଯ୍ୟ କରିବ ।

(୩) ଏଠାରେ ସୁସ୍ଥ ଜୀବ ପରିବେଶ ବଜାୟ ରହିଲେ ପ୍ରାକୃତିକ ଉପାୟରେ ଲୁଣା ଜଙ୍ଗଲର ଉଦ୍ଭିଦମାନେ ଆପଣା ଛାଏଁ ଛାଏଁ ସୃଷ୍ଟି ହେବାକୁ ସୁଯୋଗ ସୃଷ୍ଟି ହେବ ଓ ଉଦ୍ଭିଦଶୂନ୍ୟ ଅଞ୍ଚଳରେ ଆମ୍ଭଙ୍କୁ କୃତ୍ରିମ ଉପାୟରେ ନୂତନ ସମଜାତୀୟ ବନ ସୃଷ୍ଟି

କରିବାକୁ ସୁଯୋଗ ମିଳିବ । ଏହାଦ୍ୱାରା ଆମ୍ଭେ ପ୍ରକୃତି ତିଆରି ଦୁର୍ବିପାକ ବିରୋଧୀ (Nature's Anti Disaster planning) ଲବଣ ବନ ବଳୟକୁ ସୁଦୃଢ଼ କରିପାରିବୁ ।

(୪) ଲୁଣା ଜଙ୍ଗଲ ଭୂମି ବ୍ୟତୀତ ଅନ୍ୟ ସ୍ଥାନରେ ମୃତ୍ତିକା ଓ ଭୂମିକୁ ଲକ୍ଷ୍ୟ କରି ଉଦ୍ଭିଦ ସ୍ଥିର କରି ବୃକ୍ଷରୋପଣ କରିବାକୁ ହେବ ।

ଗୋଟିଏ ବିଷୟ ସମ୍ପୂର୍ଣ୍ଣ ଲୟରେ ରହିବା ଉଚିତ ଯେ ସମୁଦ୍ରର ଯେଉଁଠାରେ ଜଳର ଗଭୀରତା ଅଧିକ ସେଠାରେ ଲଘୁଚାପ ବଳୟ ସୃଷ୍ଟି ହୁଏ । ଅଗଭୀର ସମୁଦ୍ରରେ ଲଘୁଚାପ ବଳୟ ସୃଷ୍ଟି ହେବା ଖୁବ୍ କମ୍ ଏବଂ ଯଦି ହୁଏ ତାହାର ତୀବ୍ରତା ଅଧିକ ନୁହେଁ । ଏଣୁ ଯେଉଁଠାରେ ସମୁଦ୍ରର ଅଗଭୀରତା ଅଧିକ, ସେହି ଅଞ୍ଚଳରେ ତଟ ଭୂମିରେ ଘନ ଜଙ୍ଗଲ ସୃଷ୍ଟି କରିବାକୁ ହେବ ଓ ସେଠାରେ ଯେଉଁ ପ୍ରାକୃତିକ ଉଦ୍ଭିଦମାନେ ଆପଣା ଛାଁ ଛାଁ ଆସୁଛନ୍ତି ସେମାନଙ୍କୁ ପ୍ରାଧାନ୍ୟ ଦେବାକୁ ହେବ । ଅର୍ଥପିପାସୁ ବୃକ୍ଷରୋପଣକାରୀଙ୍କୁ ଏହି ସୁଯୋଗରୁ ବଞ୍ଚିତ କରି ସ୍ଥାନୀୟ ବାସିନ୍ଦାଙ୍କୁ ପ୍ରୋତ୍ସାହିତ କରି ଗୋପାଳପୁରଠାରୁ ବାଲେଶ୍ୱରର ଚନ୍ଦନେଶ୍ୱର ପର୍ଯ୍ୟନ୍ତ ୪୮୦ କିଲୋମିଟର ଦୈର୍ଘ୍ୟ ଓ ୧୫ କିଲୋମିଟର ପ୍ରସ୍ଥ ଉପକୂଳ ଅଞ୍ଚଳରେ ସୁଦୀର୍ଘ ସୁରକ୍ଷିତ (Protected) ବନବଳୟ ସୃଷ୍ଟି କରିବା ହେବ ପ୍ରକୃତ ଦୁର୍ବିପାକ ବିରୋଧୀ (Anti Disaster Planning) ପରିକଳ୍ପନା ; କିନ୍ତୁ ଉପକୂଳ ରାଜପଥ ନୁହେଁ ।

ବିଶେଷ ପରିତାପର ବିଷୟ ଏହି ଯେ, ଆମ୍ଭ ଦେଶ ଯୋଜନାକାରୀ (Planners) ରାଜନେତା ଓ ବିଶେଷଜ୍ଞ ମଣ୍ଡଳୀ ଗ୍ରାମ୍ୟ ଏବଂ ଅଧୁଷିତ ଅଞ୍ଚଳର ଯୋଜନା କଲାବେଳେ ଏହିସବୁ ଅଞ୍ଚଳରୁ ବହୁ ଦୂରରେ ରହି ଯୋଜନା ପ୍ରସ୍ତୁତ କରନ୍ତି । ଏଣୁ ଆମର ଦୁର୍ଦ୍ଦଶା ଲାଘବ ହେବା ପରିବର୍ତ୍ତେ ବଢ଼ି ବଢ଼ି ଚାଲେ । ଉପକୂଳ ଅଞ୍ଚଳ ପାଇଁ ପ୍ରକୃତିଦତ୍ତ ବ୍ୟବସ୍ଥା ଜୀବ ପରିବେଶ ଦୁର୍ବିପାକ ବିରୋଧୀ ପରିକଳ୍ପନାକୁ ପ୍ରଥମେ ଅଗ୍ରାଧିକାର ଦିଆଯାଇ କାର୍ଯ୍ୟ କଲେ ଆମ୍ଭକୁ ଏହିସବୁ ଫଳ ମିଳିବ ।

(କ) ଲୁଣା ଜଙ୍ଗଲର ବାୟବ୍ୟ ଅଂଶ ପବନର ଗତିରୋଧକ (Wind Speed Breaker) ଭାବେ କାର୍ଯ୍ୟ କରୁଥିବାବେଳେ ଏହି ବୃକ୍ଷ ଅର୍ଥାତ ଜଙ୍ଗଲ ଉଦ୍ଭିଦମାନଙ୍କର ମୂଳ ଜୁଆର ଜଳର ଗତିରୋଧକ (Tide-speed) ଭାବେ କାର୍ଯ୍ୟ କରେ । (ଖ) ସାଗରରୁ ସୃଷ୍ଟ ଲବଣ ବାୟୁକୁ ଭୂଭାଗର ବହୁ ଦୂରକୁ ପ୍ରବାହିତ ହେବାକୁ ଦିଏ ନାହିଁ ଅର୍ଥାତ ଲୁଣା ଜଳବାୟୁକୁ ଭୂଭାଗର ବହୁ ଅଞ୍ଚଳ ଅଧିକାରଭୁକ୍ତ ହେବାକୁ ଦିଏ ନାହିଁ ।

ଏଣୁ ଦେଶ ତଥା ପ୍ରଦେଶର ପ୍ରତ୍ୟେକ ନାଗରିକଙ୍କୁ ମୋର ଅନୁରୋଧ ଉପକୂଳ ରାଜପଥର ପରିକଳ୍ପନା ଓ ଏହା କାର୍ଯ୍ୟକାରୀ କରିବା ପୂର୍ବରୁ ନିମ୍ନ ବିଷୟମାନଙ୍କୁ ବିଚାରକୁ ନେବେ ।

(କ) ଯେଉଁଠାରେ ଆଂଶିକ ଲୁଣାଜଙ୍ଗଲ ବଳୟ ସୁଦୃଢ଼ ସେଠାରେ ସାମୁଦ୍ରିକ ଦୁର୍ବିପାକ ବିରୋଧୀ ବ୍ୟବସ୍ଥା କିପରି କାର୍ଯ୍ୟ କରୁଛି ?

(ଖ) ବଙ୍ଗଳାଦେଶ ଶରଣାର୍ଥୀ ଥଇଥାନ, ଚିଙ୍ଗୁଡ଼ି ଚାଷ ଏବଂ ଅନ୍ୟାନ୍ୟ ଜଙ୍ଗଲ ଜମି ଆବାଦ ଦ୍ୱାରା ଆମର କ'ଣ କ'ଣ କ୍ଷତି ଘଟିଛି ?

(ଗ) ପାରାଦୀପଠାରୁ ଦୈତାରୀ ପର୍ଯ୍ୟନ୍ତ ହୋଇଥିବା ଦ୍ରୁତଗାମୀ ରାଜପଥ (Express Highway) ଗତ ମହାପ୍ରଳୟରେ ଆମର କେତେଦୂର କ୍ଷତି କରିଛି ? ଏହି ନୂତନ ଉପକୂଳ ରାଜପଥ ହେଲେ ଆମ ଦୁଃଖ ଲାଘବ କରିବାକୁ କେତେଦୂର ସହାୟକ ହେବ ?

(ଘ) ଗତ ମହାବାତ୍ୟାରେ ଲୁଣା ଜୁଆର ଫସଲ ଜମିରେ ମାଡ଼ି ବା ପ୍ରବାହିତ ହୋଇ ମା'ମୃତ୍ତିକା (Mother Earth) କୁ କିପରି ପ୍ରଭାବିତ କରିଛି ?

(ଙ) ଯେଉଁଠାରେ ବିଭିନ୍ନ କିସମର ଚାଷ ପାଇଁ ଆଡ଼ିବନ୍ଧ ରହିଛି, ସେଠାରେ ପ୍ରାକୃତିକ ଉପାୟରେ ଲୁଣା ଉଦ୍ଭିଦ ବା ବଣ କାହିଁକି ସୃଷ୍ଟି ହୋଇ ପାରୁନାହିଁ ?

(ଚ) ଯେଉଁ ଅଞ୍ଚଳରେ ଜୁଆର ପାଣି ମାଡୁଛି ଓ ଛାଡୁଛି ସେହି ମୃତ୍ତିକାରେ ଶତକଡ଼ା ଲବଣ ଭାଗ କେତେ, ଓ ଯେଉଁ ଅଞ୍ଚଳରେ ଜଳ ଆବଦ୍ଧ ହୋଇ ରହିଛି, ସେଠାରେ ଲବଣର ମାତ୍ରା କେତେ ଓ ଉଦ୍ଭିଦମାନଙ୍କର ଅବସ୍ଥା କ'ଣ ?

(ଛ) ଖୋଲା ଜୁଆରିଆ ଅଞ୍ଚଳରେ ଜୈବମଣ୍ଡଳର ଅବସ୍ଥା କ'ଣ ? ଏବଂ ଆବଦ୍ଧ ଲୁଣାପାଣି ଅଞ୍ଚଳରେ ଜୈବମଣ୍ଡଳ ମଧ୍ୟରେ ପ୍ରଭେଦ କ'ଣ ?

(ଜ) ସମୁଦ୍ର ବାଲିରେ ମଣିଷକୃତ ଉଦ୍ଭିଦ ବନ୍ଧ (Green-Embankment) ପ୍ରଭାବିତ କରୁଥିବା ଅଞ୍ଚଳ ଓ ମଣିଷକୃତ ଉପକୂଳ ରାଜପଥ ପ୍ରଭାବିତ କରିବା ଅଞ୍ଚଳର ସମ୍ଭାବନାକୁ ପୃଥକ ପୃଥକ ଭାବେ ବିଚାର କରି ଏହି ନୂତନ ରାସ୍ତାଦ୍ୱାରା ଉପକୂଳ ଅଞ୍ଚଳର ଲାଭ କେତେ ଓ କ୍ଷତି କେତେ ବିଶେଷଜ୍ଞମଣ୍ଡଳୀଙ୍କଦ୍ୱାରା ଯାଞ୍ଚ ଓ ସ୍ଥିରୀକୃତ କରିବା ।

✲ ✲ ✲

# ଉପକୂଳ ଅଞ୍ଚଳ ଜଳ ନିଷ୍କାସନ ଯୋଜନା

ଏବେ କୌଣସି କୌଣସି ସମ୍ବାଦପତ୍ରମାନଙ୍କରୁ ଦେଖିବାକୁ ମିଳୁଛି, ଓଡ଼ିଶା ସରକାର ଆମ ବନ୍ୟା ପ୍ରପୀଡ଼ିତ ୧୪ ଗୋଟି ଜିଲ୍ଲାର ୨୦ ଲକ୍ଷ ହେକ୍ଟର ଜମିରୁ ବିଶେଷକରି ଉପକୂଳବର୍ତ୍ତୀ ଅଞ୍ଚଳର ୭ ଲକ୍ଷ ହେକ୍ଟର ଜମିରେ ଜଳ ନିଷ୍କାସନ ସମସ୍ୟା ଅତିକ୍ରମ କରିବାକୁ ଏକ ହଜାର କୋଟି ଟଙ୍କାର ଏକ ଯୋଜନା କରୁଛନ୍ତି । ଏହା ସ୍ୱାଗତଯୋଗ୍ୟ । ଯଦି ଠିକ୍ ରାସ୍ତାରେ ଏହା କାର୍ଯ୍ୟକାରୀ କରାଯାଏ । ଆମ ପ୍ରଦେଶର ମୋଟ ୯୦ ଶତାଂଶ ଜମିରେ ଧାନ କରାଯାଏ ଏବଂ ସେଥି ମଧ୍ୟରୁ ୩୦ ଶତାଂଶ ଜମିରେ ଜଳ ଜମି ରହୁଥିବାରୁ ଧାନ ଫସଲ ଆଶାଜନକ ଭାବେ ହୋଇପାରୁ ନାହିଁ । ପୂର୍ବରୁ ଆମ ସରକାର ଉପକୂଳ ରାଜପଥ ନିର୍ମାଣ କରି ସମୁଦ୍ର ଜଳକୁ ପ୍ରତିରୋଧ କରିବାର ଦାମ୍ଭିକତା ବହୁବାର ପ୍ରକାଶ କରିଛନ୍ତି । ଏବେ କହିଲେଣି ଉପକୂଳ ଅଞ୍ଚଳର ଜଳ ନିଷ୍କାସନ ସମସ୍ୟା ଦୂର କରିବାକୁ ହେବ । ସରକାରଙ୍କର ଦ୍ୱୈତ ମନୋଭାବରୁ ଯାହା ଜଣାପଡୁଛି ଉପକୂଳବାସୀଙ୍କର ପ୍ରକୃତ ସମସ୍ୟା ସରକାର ବୁଝିବାକୁ ଅକ୍ଷମ । ଗୁଡ଼ିଏ ବିଶେଷଜ୍ଞମାନଙ୍କୁ ନେଇ ବାରମ୍ବାର ମିଟିଂ କଲେ କିମ୍ବା କୌଣସି ବିଷୟ ବାରମ୍ବାର ଚର୍ଚ୍ଚା କଲେ ସେ ବିଷୟରେ କୌଣସି ବିଷୟରେ କୌଣସି ଫଳ ମିଳେ ନାହିଁ, ବରଂ ଉପକୂଳବାସୀଙ୍କୁ ବିଶ୍ୱାସକୁ ନେଇ ସେମାନଙ୍କର ପ୍ରକୃତ ଅନୁଭୂତି ଏବଂ ଅଭିଜ୍ଞତାକୁ ଉପଯୋଗ କରିପାରିଲେ ସମସ୍ୟା ଦୂର ହେବ । ଏବେ ସରକାର ଠିକ୍ ରାସ୍ତାକୁ ଆସିଛନ୍ତି । ଉପକୂଳ ଅଞ୍ଚଳରେ ୨୦ ଲକ୍ଷ ହେକ୍ଟର ବିସ୍ତୀର୍ଣ୍ଣ ଚାଷ ଜମିରେ ଜଳ ଜମୁଥିବାରୁ ସରକାରଙ୍କ ମୁଣ୍ଡବ୍ୟଥାର କାରଣ ହୋଇଛି । ଏ ମୁଣ୍ଡ ବ୍ୟଥାର କାରଣ କେଉଁ ବିଷୟମାନଙ୍କୁ ନେଇ ସୂତ୍ରପାତ ହୋଇଛି ତାହା ପ୍ରଥମେ ସରକାରଙ୍କୁ ନିର୍ଣ୍ଣୟ କରିବାକୁ ହିଁ ହେବ । ଯଦିଓ ଏହି ସମସ୍ୟା ପୂର୍ବରୁ କେତେକାଂଶରେ ଥିଲା, ଏପରି ସମସ୍ୟା ବହୁଳ ନଥିଲା । ସେ ସବୁ ବିଷୟରେ ସ୍ଥାନୀୟ ବାସିନ୍ଦାଙ୍କୁ ପଚାରନ୍ତୁ ସେମାନେ ସଠିକ୍ ଉତ୍ତର ଦେବେ ।

ପ୍ରଥମ ହେଲା ଆମ ଉପକୂଳ ଅଞ୍ଚଳର ଦୈର୍ଘ୍ୟ ପ୍ରାୟ ୪୮୦ କିଲୋମିଟର । ଏହି ବିସ୍ତୀର୍ଣ୍ଣ ୪୮୦ କିଲୋମିଟର ଦୈର୍ଘ୍ୟ ଅଞ୍ଚଳରେ ଓଡ଼ିଶାର ପ୍ରଧାନ ପ୍ରଧାନ ପ୍ରବାହିତ ନଦୀ ଯଥା; ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସାଳନ୍ଦୀ, ସୁବର୍ଣ୍ଣରେଖା, ଖରସ୍ରୋତା, ବୁଢ଼ାବଳଙ୍ଗ, ଋଷିକୁଲ୍ୟା ଏବଂ ଦେବୀ ବଙ୍ଗୋପସାଗରରେ ପଡ଼ିଛନ୍ତି । ଏହା ବ୍ୟତୀତ ବହୁ ବଡ଼ରୁ ଛୋଟ ଜଳସ୍ରୋତ ଯଥା; କାଣୀ ନଦୀ, ନାଳ, ଉପ-ନାଳ ବିସ୍ତୀର୍ଣ୍ଣ ଉପକୂଳ ଭୂଭାଗର ଜଳକୁ ସଂଗ୍ରହ କରି ଏହି ନଦୀମାନଙ୍କ ସହିତ ସଂଯୋଗ ହୋଇ ସମୁଦ୍ରରେ

ପଡ଼ିଥାନ୍ତି । ଏମାନେ ପ୍ରତ୍ୟେକ ଗୋଟିଏ ଗୋଟିଏ ଛୋଟ ବଡ଼ ପ୍ରାକୃତିକ ଜଳ ନିଷ୍କାସନ ଯୋଜନା ଭାବେ କାର୍ଯ୍ୟ କରନ୍ତି । କିନ୍ତୁ ଏବେ ଏମାନଙ୍କ ମଧ୍ୟରୁ କେହି ଗୋଟି ହେଲେ ସୁଚାରୁରୂପେ କାର୍ଯ୍ୟ ସମ୍ପାଦନ କରିବାକୁ ଅକ୍ଷମ । ଏହି କାଣୀ ନଦୀ, ନାଳ ବା କ୍ରିକ ଏବଂ ଉପନାଳ ମଧ୍ୟରୁ ଅନେକଙ୍କର ଅସ୍ତିତ୍ୱ ଲୋପ ପାଇବାକୁ ବସିଲାଣି ଭୂଭାଗରୁ ଜଳ ନିଷ୍କାସନ ହେବ କିପରି ? ଓ କେଉଁ ରାସ୍ତା ଦେଇ ? ସରକାର ଚିନ୍ତା କରନ୍ତୁ, ଏସମସ୍ୟା ସୃଷ୍ଟି ହେଲା କିପରି ? ଏହି ସମସ୍ୟା ସୃଷ୍ଟି ହେବାର ମୁଖ୍ୟ କାରଣ ହେଲା, ଉପକୂଳ ଲୁଣା ଜଙ୍ଗଲକୁ ସମ୍ପୂର୍ଣ୍ଣ ଧ୍ୱଂସ କରାଯାଇ ଚିଙ୍ଗୁଡ଼ି ଚାଷ ଘେରିବନ୍ଧ, ପାନଚାଷ କୁଦ, ଧାନଚାଷ, ଘରଡିହ ପିଢ଼ ସାଙ୍ଗକୁ ଉପକୂଳ ଅଞ୍ଚଳରେ ଗଢ଼ି ଉଠିଥିବା ପାରାଦୀପ ବନ୍ଦର, ପାରାଦୀପ ଫସ୍‌ଫେଟ୍ ସାରକାରଖାନା, ଇଣ୍ଡିଆନ୍ ଅଏଲ୍ ଏବଂ ଅସ୍‌ୱାଲ୍ ଇତ୍ୟାଦି ବଡ଼ ବଡ଼ ଶିଳ୍ପ ସାଙ୍ଗକୁ ଅନେକ ଛୋଟ ଛୋଟ ପର୍ଯ୍ୟଟନ ଶିଳ୍ପ ଓ ସହରମାନ ଯୋଗ ଦେଇ ବେଳାଭୂମି ଅଞ୍ଚଳକୁ ବିଶେଷ କରି ସମୁଦ୍ର ତୀର ଭୂ-ପତନକୁ ସମତଳ ଭୂଭାଗ ଅପେକ୍ଷା କ୍ରମଶଃ ଉଚ୍ଚ କରିବାରେ ଲାଗିଛି । ଏହା କେବଳ ପାରାଦୀପ କିମ୍ବା ତତ୍ ସଂଲଗ୍ନ ଆଞ୍ଚଳିକ ଅବସ୍ଥା ନୁହେଁ । ଏହି ସମସ୍ୟା ଓଡ଼ିଶା ଉପକୂଳରେ ସବୁଠାରେ ରହିଛି, ଏବଂ ଜନସଂଖ୍ୟା ବୃଦ୍ଧି ହେବାରେ ଲାଗିଛି ଏବଂ ବସ୍ତି ବଢ଼ି ବଢ଼ି ଚାଲିଛି । ସମୁଦ୍ର (ତୀର) ପତନ ଉଚ୍ଚ ହେବାରେ ଲାଗିଛି । ଯାହାଦ୍ୱାରା ଉପକୂଳବର୍ତ୍ତୀ ବିଶାଳ ଭୂଭାଗର ଅଥବା ଭୂଖଣ୍ଡର ସଂଗୃହୀତ ଜଳ କୌଣସି ପ୍ରକାରରେ ନଦୀ, ଉପନଦୀ, ନାଳ ବା କ୍ରିକ୍, ଉପନାଳ ବା ନାଳିଆ ମାଧ୍ୟମରେ ସମୁଦ୍ରକୁ ନିଷ୍କାସିତ ହେବାକୁ ସକ୍ଷମ ହୋଇପାରୁନାହିଁ । ଏହାର ପ୍ରମାଣ ସ୍ୱରୂପ ଏବେ ମଧ୍ୟ ସରକାରଙ୍କୁ ଦେଖିବାକୁ ମିଳିବ ବୁଢ଼ୀନାଈ, ସନ୍ତରା ନଈ, ଏହି ନଦୀସବୁ ପୋତି ହୋଇପଡ଼ିବାରୁ ସେଥିରେ ଲୋକେ ଡାଲୁଅ ଧାନ ଚାଷ କରୁଛନ୍ତି । ସରକାରୀ ପ୍ରତିନିଧିଙ୍କୁ ବେଶୀଦୂର ଯିବାକୁ ହେବ ନାହିଁ । କୁଜଙ୍ଗ କଲେଜ ସୀମା ସାନ୍ତରା ନଈରେ ସେମାନେ ଦେଖିବାକୁ ପାଇବେ ଡାଲୁଅ ଧାନ ଚାଷ । ଏଣୁ ବିସ୍ତୀର୍ଣ୍ଣ ଭୂଭାଗର ସଂଗୃହୀତ ଜଳ ଏହିସବୁ କାରଣରୁ ସମୁଦ୍ରକୁ ନିଷ୍କାସିତ ହୋଇ ନପାରି ଭୂଭାଗରେ ଅର୍ଥାତ ଚାଷ ଜମି ଅଥବା ଜନବସତି ଅଞ୍ଚଳରେ ଜମା ହେବା ଛଡ଼ା ଉପାୟ କ'ଣ ଅଛି ? ଯେଉଁ କ୍ରିକ୍ ଓ କାଣୀନଈମାନଙ୍କରେ ଦିନେ ଡଙ୍ଗାରେ ଚଢ଼ି ମାଛଧରା ହେଉଥିଲା, ସେହି ଜଳସ୍ରୋତଗୁଡ଼ିକ ଏବେ ପୋତା ପଡ଼ିଗଲେଣି । କୁଜଙ୍ଗ ଠାରୁ ପାରାଦୀପ ମଧ୍ୟରେ ଏହାର ବହୁ ପ୍ରମାଣ ଦେଖିବାକୁ ମିଳିବ ।

ଏହାର ଅନ୍ୟ ଏକ ମୁଖ୍ୟ କାରଣ ହେଲା ଲୁଣା ଜଙ୍ଗଲ ସବୁ ଧ୍ୱଂସ କରାଯିବା ଦ୍ୱାରା ଭୂପୃଷ୍ଠର ମୃତ୍ତିକା କ୍ଷୟ ହୋଇ ନଦୀ ଓ ଉପନଦୀ ମୁହାଣ ଅଥବା ରିଭର ମାଉଥଗଡ଼ିକୁ ପୋତି ପକାଇବା ଏବଂ ନାଳ, ଉପନାଳ ଏବଂ ନାଳିଆଗୁଡ଼ିକ

ନଦୀମାନଙ୍କ ସହିତ ସଂଯୁକ୍ତ ହୋଇଥିବା ସ୍ଥାନ ପୋତା ପଡ଼ିଥିବା ଦ୍ୱାରା ବିସ୍ତୀର୍ଣ୍ଣ ସ୍ଥଳଭାଗର ଜଳ ସହଜରେ ସମୁଦ୍ର ମଧ୍ୟକୁ ନିଷ୍କାସିତ ହୋଇ ନପାରି ଉପକୂଳବର୍ତ୍ତୀ ଅଞ୍ଚଳରେ ଜମା ହୋଇ ରହୁଛି ।ଏହା ବ୍ୟତୀତ ପାରାଦୀପ ରେଳ ରାସ୍ତା ଏବଂ ଏକ୍ସପ୍ରେସ ହାଇୱେ ହେବା ଦ୍ୱାରା ଯେଉଁ ନାଳ ବା କ୍ରିକଗୁଡ଼ିକ ମାଧମରେ ଭୂପୃଷ୍ଠର ପାଣି ସଂଗୃହୀତ ହୋଇ ନଦୀମଧ୍ୟକୁ ଚାଲିଯାଇ ସମୁଦ୍ରରେ ପଡୁଥିଲା, ସେସବୁ କ୍ରିକ୍ ପୋତା ପଡ଼ିଯିବା ଦ୍ୱାରା ଭୂପୃଷ୍ଠର ସଂଗୃହୀତ ଜଳ ସମୁଦ୍ରକୁ ଗଡ଼ିଯିବାର ସମ୍ଭାବନା ହରାଇ ବସିଲା । ଏହା ସହିତ ମୃତ୍ତିକା କ୍ଷୟ ଏବଂ ସବୁ ରାସ୍ତାରୁ ମାଟି ଧୋଇ ହୋଇ ସମୁଦ୍ର ତୀର ଭୂପତନକୁ ଭୂପୃଷ୍ଠ ଅପେକ୍ଷା କ୍ରମଶଃ ଉଚ୍ଚ କରିବାକୁ ଲାଗିଲା । ଏହିସବୁ ପ୍ରାକୃତିକ ଅପଚିତ୍ରଣ ଉପକୂଳବର୍ତ୍ତୀ ଅଞ୍ଚଳର ୭ ଲକ୍ଷ ହେକ୍ଟର ଚାଷ ଜମି କାହିଁକି ସମୁଦାୟ ବାତ୍ୟା ବିଧ୍ୱସ୍ତ ୧୪ଟି ଜିଲ୍ଲାର ୨୯ ଲକ୍ଷ ହେକ୍ଟର ଚାଷ ଜମିକୁ ଆବଦ୍ଧ ଜଳଭଣ୍ଡାର ଅଥବା ଲବଣ-ଜଳ ଭଣ୍ଡାରରେ ପରିଣତ କରିପାରିଛି । ଯଦି ଏହିସବୁ ଯୋଜନା କରିବା ପୂର୍ବରୁ ଆବଦ୍ଧ ଜଳ ବିଷୟରେ ଚିନ୍ତା କରାଯାଇ ଓ ତାହାର ନିଷ୍କାସନ ପାଇଁ ସମୁଚିତ ବ୍ୟବସ୍ଥା କରାଯାଇଥାନ୍ତା ଏବଂ ପ୍ରାକୃତିକ ଜଳ ସ୍ରୋତଗୁଡ଼ିକ ସେମାନଙ୍କର ଦାୟିତ୍ୱ ତୁଲାଇବାକୁ ସୁଯୋଗ ଦିଆଯାଇଥାନ୍ତା, ଆଜି ଏହି ଉପକୂଳ ଆବଦ୍ଧ ଜଳ ଉପକୂଳବାସୀଙ୍କ ଆତଙ୍କର କାରଣ ହୋଇନଥାନ୍ତା ।

**ଉପକୂଳ ଅଞ୍ଚଳରେ କେଉଁ ଧରଣର ଜଳ ସମସ୍ୟା ସୃଷ୍ଟି କରେ :**

ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରଧାନତଃ ଚାରି ପ୍ରକାର ଜଳ ସମସ୍ୟା ସୃଷ୍ଟି କରେ । ପ୍ରଥମ ହେଲା, ବର୍ଷା ଜଳ, ଦ୍ୱିତୀୟ ହେଲା ବନ୍ୟା ଜଳ, ତୃତୀୟ ହେଲା ସବୁଠାରୁ ମାରାତ୍ମକ ଓ ସମସ୍ୟା ସୃଷ୍ଟିକାରୀ ସମୁଦ୍ର ଲୁଣାପାଣି ବାତ୍ୟା ସମୟରେ ଫୁଲି ଉଠି ନଦୀସ୍ରୋତର ବିପରୀତ ଦିଗରେ ପ୍ରବାହିତ ହୋଇ ଏବଂ କୂଳଲଘି ଭୂପୃଷ୍ଠକୁ ଚାଲି ଆସି ଏବଂ ଫେରି ନଯିବାକୁ ସକ୍ଷମ ହେବା ଦ୍ୱାରା । ଚତୁର୍ଥ ହେଲା ସମୁଦ୍ର ଜୁଆର ଜଳ, କୂଳ ଲଘି ଓ ନଦୀମୁହାଣ ଦେଇ ଭୂପୃଷ୍ଠ ଅର୍ଥାତ ସ୍ଥଳଭାଗକୁ ଚାଲି ଆସିବା ଓ ଫେରିଯିବାକୁ ସକ୍ଷମ ନହେବା । ଏହି ହାଇଡ୍ରୋ ଡାଇନାମିକ ପ୍ରସେସ୍ ବା ଜଳଭୌତିକ ପ୍ରକ୍ରିୟାକୁ ମଣିଷ ରୋକିବାକୁ ସକ୍ଷମ ହେବ ନାହିଁ । ଏହାକୁ ରୋକିବାକୁ ଲୁଣା ଜଙ୍ଗଲ ହିଁ କେବଳ ସକ୍ଷମ । ଯାହାକି ଆମର ଥିଲା ଏବଂ ଏବେ ଆମେ ଏହାକୁ ହରାଇ ବସିଛୁ । କାରଣ ଲୁଣା ଜଙ୍ଗଲର ପ୍ରତ୍ୟେକ ବୃକ୍ଷ ଗୋଟିଏ ଗୋଟିଏ ଜୁଆର ଜଳ ଗତିକୁ ହ୍ରାସ କରିବାରେ ସ୍ପିଡ୍-ବ୍ରେକର୍ ଭାବେ କାର୍ଯ୍ୟ କରନ୍ତି । ଯାହା ଏବେ ଆମେ ପ୍ରକୃତିଠାରୁ ପାଇବାକୁ ଅକ୍ଷମ । ପ୍ରକୃତିର ଭୌତିକ ସୁରକ୍ଷା ଆମେ ନିଜ ହାତରେ ହରାଇବା ଦ୍ୱାରା ଏହି ସବୁ ସମସ୍ୟାକୁ ସ୍ୱାଗତ କରିଛୁ ।

## ଆମ ପ୍ରତି ପ୍ରକୃତିର ବିଦ୍ରୂପ

ଉପକୂଳ ଅଞ୍ଚଳରେ ବିଭିନ୍ନ ଉପାୟରେ ସଂଗୃହୀତ ଜଳର ସମସ୍ୟା ସରକାର ସହଜରେ ସମାଧାନ କରିପାରିବେ ନାହିଁ । ଯେପର୍ଯ୍ୟନ୍ତ ସ୍ଥାନୀୟ ଅଧିବାସୀଙ୍କୁ ସରକାର ବିଶ୍ୱାସ ନଦେଇଛନ୍ତି, କିମ୍ବା ଏଥିପ୍ରତି ପ୍ରକୃତ ଆନ୍ତରିକତା ପ୍ରକାଶ କରିନାହାନ୍ତି । ଏବେ ସରକାର ବାତ୍ୟାଞ୍ଚଳକୁ ପୁନର୍ଜିବିତ କରିବାକୁ ଯାଇ କର୍ମକର୍ତ୍ତାଙ୍କ ଗସ୍ତ ବାବଦକୁ କେତେ ଖର୍ଚ୍ଚ କଲେଣି ଓ ଦୁର୍ନୀତିରେ କେତେ ବୋହିଗଲାଣି, ସେସବୁ ଯଦି ସମୀକ୍ଷା କରନ୍ତି, ତା'ହେଲେ ଉପକୂଳବାସୀ ପାଇଛନ୍ତି କେତେ ଓ ସରକାର ଦେଇଛନ୍ତି କେତେ ତାହା ଏକା ସରକାର କାହିଁକି, ସମସ୍ତ ଉପକୂଳବାସୀଙ୍କ ସମେତ ଦେଶର ସମସ୍ତ ନାଗରିକମାନଙ୍କୁ ସୁସ୍ପଷ୍ଟ ହୋଇଯିବ । ଏଣୁ ସରକାରଙ୍କୁ ଏଥିରେ ଗଭୀର ଭାବେ ସଂଶ୍ଳିଷ୍ଟ ନହୋଇ ନୈତିକତାକୁ ପ୍ରାଧାନ୍ୟ ଦେଲେ ସଂପୂର୍ଣ୍ଣ ନହେଲେ ମଧ ଆଶାଜନକ ସଫଳତା ମିଳିପାରେ ।

**ଚାଷ ଜମିରେ ପାଣି ଜମିଲେ କି ପ୍ରକାର କ୍ଷତି ହୁଏ :**

ବିସ୍ତୃତ ଭୂ-ଭାଗରେ ବହୁଦିନ ଧରି ପାଣି ଜମି ରହିଲେ ମୃତ୍ତିକାରେ ଥିବା ଲୁଣା ଅଂଶ ଉପରସ୍ତରକୁ ଉଠିଆସି ଭୂମି ଉପରେ ଜମା ହୋଇ ମା ମୃତ୍ତିକା ବା ମଦର ଆର୍ଥକୁ ପ୍ରଭାବିତ କରି ଫଳପ୍ରସୂବିହୀନ କରିଥାଏ । ଏହା ସହିତ ସମୁଦ୍ରର ଜୁଆର ପାଣି ଯୋଗ ଦେଇ ମା ମୃତ୍ତିକାକୁ ସମ୍ପୂର୍ଣ୍ଣ ନଷ୍ଟ କରି ପ୍ରତ୍ୟେକ ଚାଷ ଜମିକୁ ଲୁଣ ପଟାଳିରେ ପରିଣତ କରିଦିଅନ୍ତି । କ୍ରମାଗତ ଏ ପ୍ରକାର ପ୍ରକ୍ରିୟା ଦ୍ୱାରା ସମସ୍ତେ ଆକ୍ରାନ୍ତ ଭୂଭାଗ ହାଇପର ସାଲିନେସନ୍ ବା ଅତିରିକ୍ତ ଲବଣାକ୍ତ ହେବା ଦ୍ୱାରା ଲବଣ ମରୁର ସୂତ୍ରପାତ ହୁଏ । ଯାହା ଘଟିଛି ସୌରାଷ୍ଟ୍ରର ରାନ୍ ଏବଂ କଚ୍ଛ ଉପକୂଳରେ । ଏଣୁ ଆମ ସରକାରଙ୍କ ଉପକୂଳ ରାଜପଥ ନିର୍ମାଣ ଚିନ୍ତା ଯଦି କାର୍ଯ୍ୟକାରୀ ହୁଏ, ତା'ହେଲେ ଏହି ସମସ୍ୟାଠାରୁ ବଳି ସମସ୍ୟା ସୃଷ୍ଟି ହୋଇ ସମୁଦାୟ ଉପକୂଳ ଜିଲ୍ଲାଗୁଡ଼ିକୁ ଏକ ବିସ୍ତୀର୍ଣ୍ଣ ଲବଣ ଜଳଭଣ୍ଡାରରେ ପରିଣତ କରିବ, ଯାହାକି ଆମ ସରକାର ରାଜନୈତିକ କିମ୍ବା ବୈଶାରଦ ବିଶେଷଜ୍ଞ ତତ୍ତ୍ୱ ମାଧ୍ୟମରେ ସମାଧାନ କରିପାରିବେ ନାହିଁ । ଏହା ଦ୍ୱାରା ସଂପୃକ୍ତ ସରକାର କେବଳ ଲୋକପ୍ରିୟତା ହରାଇବେ, କିନ୍ତୁ ଉପକୂଳବାସୀ ଚିରଦିନ ପାଇଁ ସମୁଦ୍ର ଗର୍ଭରେ ଲୀନ ହେବେ । ଏଣୁ ସରକାରଙ୍କୁ ଉପକୂଳ ରାଜପଥ ଚିନ୍ତା ସବୁଦିନ ପାଇଁ ପରିହାର କରିବାକୁ ହିଁ ହେବ । ଏ ସମସ୍ତ ବିଷୟ ବିଚାରକୁ ନେଲେ ସରକାରଙ୍କ ପାଖରେ ଗୋଟିଏ ମାତ୍ର ଉପାୟ ହେଉଛି ପ୍ରକୃତିର ସାହାଯ୍ୟ ନେବା । ପ୍ରକୃତି ଯେଉଁ ଉପାୟରେ ଏହି ସମସ୍ୟାକୁ ପୂର୍ବରୁ ସମାଧାନ କରୁଥିଲା, ସେହି ଉପାୟ ହିଁ ସରକାରଙ୍କ ଦ୍ୱାରା ସ୍ୱୀକୃତି ଲାଭ କରିବା ଉଚିତ ହେବ ।

❊ ❊ ❊

# ଅଂଶୁଘାତକୁ ଆମେ ଡାକି ଆଣିଛୁ

ଖରାଦିନେ କୌଣସି ସ୍ଥାନର ଉତ୍ତାପ ଅତ୍ୟଧିକ ବୃଦ୍ଧି ଯୋଗୁ ମଣିଷ ଓ ପ୍ରାଣୀର ଶାରୀରିକ ଉତ୍ତାପର ବୃଦ୍ଧି ଘଟି ଦେହର ଜଳ ଓ ଲବଣାଂଶ ଦ୍ରୁତଗତିରେ ହ୍ରାସ ପାଇ ପ୍ରାଣୀ ଅଂଶୁଘାତ ନାମକ ସ୍ନାୟୁବିକ୍ ବ୍ୟାଧିରେ ଆକ୍ରାନ୍ତ ହୋଇଥାଏ । ଏହି ବ୍ୟାଧି କ୍ରାନ୍ତିୟ ଜଳବାୟୁ ଜନିତ ବ୍ୟାଧି । ଆମ ଓଡ଼ିଶା ଏହି ଜଳବାୟୁର ଅନ୍ତର୍ଭୁକ୍ତ । ଏଣୁ ଏଥିପ୍ରତି ବିଶେଷ ସାବଧାନତା ଆବଶ୍ୟକ । ଏଥବରେ ତ୍ରୁଟି ଘଟିଲେ ମୃତ୍ୟୁ ମଧ ଘଟିଥାଏ ।

ଓଡ଼ିଶାର ଜଳବାୟୁକୁ ଭିତ୍ତିକରି ପ୍ରଧାନତଃ ତିନିଶ୍ରେଣୀର ଉଦ୍ଭିଦ ଜଗତ ଆମ ପ୍ରଦେଶର ଜଳବାୟୁକୁ ନିୟନ୍ତ୍ରଣ କରନ୍ତି । ପ୍ରଥମ ଏବଂ ପ୍ରଧାନ କ୍ରାନ୍ତିୟ ଅରଣ୍ୟ ବା ଟ୍ରପକାଲ ଫରେଷ୍ଟ, ଦ୍ୱିତୀୟ: ଉପକ୍ରାନ୍ତିୟ ଅରଣ୍ୟ ।

ତୃତୀୟ: ସ୍ଥାନୀୟ ଭୌଗୋଳିକ ପ୍ରାଧାନତାକୁ ଭିତ୍ତିକରି ସୃଷ୍ଟି ହୋଇଥିବା କିମ୍ବା ସୃଷ୍ଟି କରାଯାଇଥିବା 'ଉପବନ' ଅଥବା ବୃକ୍ଷ ତୋଟା ଯାହାକୁ କି ମାଇକ୍ରୋ ଫରେଷ୍ଟ ଅଥବା ଅତି କ୍ଷୁଦ୍ର ସୀମିତ ଜଳବାୟୁ (ମାଇକ୍ରୋକ୍ଲାଇମେଟ) ଜନିତ ବନରାଜି କୁହାଯାଏ । ଏହା ସମ୍ପୂର୍ଣ୍ଣ ସ୍ଥାନୀୟ ଓ କୃତ୍ରିମ ହୋଇପାରେ ।

**କ୍ରାନ୍ତୀୟ ଅରଣ୍ୟ** : ଆମ ଓଡ଼ିଶା ମୁଖ୍ୟତଃ ଉତ୍ତର ଗୋଲାର୍ଦ୍ଧରେ ଆସୁଥିବାରୁ ଏଠାରେ ଦେଖାଯାଉଥିବା ଅରଣ୍ୟ ଉତ୍ତର କ୍ରାନ୍ତୀୟ ଅରଣ୍ୟ ଭାବେ ପରିଚିତ । ଏଠାରେ ମିଳୁଥିବା ଉଦ୍ଭିଦମାନେ ହେଲେ ମୁଖ୍ୟତଃ ଶାଳ, ପିଆଶାଳ, ଶିଶୁ, ମହୁଲ, ଗମ୍ଭାରୀ, ଅସନ, ଲିମ୍ବ, ଜାମୁ, କୁରୁମ, ମିଟିକିଣିଆ, ହରିଡ଼ା, ବାହାଡ଼ା, ଅଁଳା, ବାଉଁଶ ଇତ୍ୟାଦି ବହୁସଂଖ୍ୟକ ଚିରହରିତ୍ ଏବଂ ପର୍ଣ୍ଣମୋଚି ବୃକ୍ଷ ସମୂହ । ଏମାନଙ୍କର ଧର୍ମ ହେଲା ସୂର୍ଯ୍ୟ କିରଣକୁ ପ୍ରତିହତ କରି ଭୂପୃଷ୍ଠକୁ ପୂର୍ଣ୍ଣମାତ୍ରାରେ ଛାଡ଼ି ନଦେବା ଏବଂ ଏହାର ପ୍ରକୋପକୁ ଲାଘବ କରି ବାୟୁମଣ୍ଡଳର ଆର୍ଦ୍ରତା ରକ୍ଷା କରିବା ସହିତ ଜୀବଜଗତକୁ ସୁରକ୍ଷିତ ରଖିବା । ଏହିସବୁ ଜଙ୍ଗଲ ଆମର ପାହାଡ଼, ପର୍ବତ, ହୁଡ଼ି ଓ ସମତଳ ଅଞ୍ଚଳରେ ବହୁଳ ଭାବରେ ଦେଖିବାକୁ ମିଳୁଥିଲା । କିନ୍ତୁ ଏବେ ଏମାନଙ୍କର ଅତି ଦ୍ରୁତ ଗତିରେ ଅବକ୍ଷୟ ଘଟି ଟାଙ୍ଗରା ପାହାଡ଼, ହୁଡ଼ି ପର୍ବତ ସୃଷ୍ଟି ହେବାରେ ଲାଗିଛି । ସମତଳ ଜଙ୍ଗଲର ବହୁ ଦିନରୁ ପରିସମାପ୍ତି ଘଟିଲାଣି । ସେହିପରି ଉତ୍ତର ଉପକ୍ରାନ୍ତୀୟ ଜଙ୍ଗଲ ଆମ ପ୍ରଦେଶରେ ଦେଖିବାକୁ ମିଳିଥାଏ, ଯେଉଁଠାରେ ପ୍ରାକୃତିକ ନଦୀ, ହ୍ରଦ, ଝରଣା

ଏବଂ ଉପତ୍ୟକା ଦ୍ୱାରା ସ୍ଥଳଭାଗ ବିଶେଷ ଭାବେ ପ୍ରଭାବିତ ଥାଇ କ୍ରାନ୍ତୀୟ ଜଳବାୟୁ ଠାରୁ ଅଭିନ୍ନ ରହି ବିଭିନ୍ନ ଶ୍ରେଣୀର ଆଞ୍ଚଳିକ ଉଦ୍ଭିଦ ମଣ୍ଡଳ ସୃଷ୍ଟି କରିବାରେ ସକ୍ଷମ ହୋଇ ନିଜ ପରିଚୟର ସ୍ୱତନ୍ତ୍ରତା ରକ୍ଷା କରିପାରନ୍ତି ।

କ୍ରାନ୍ତୀୟ ଏବଂ ଉପକ୍ରାନ୍ତୀୟ ଅରଣ୍ୟ ମିଳିତ ଭାବେ ଆମ ବାୟୁମଣ୍ଡଳର ଆର୍ଦ୍ରତା ରକ୍ଷା କରିବା ସହିତ ଅଂଶୁଘାତ ଆର୍ଥତ ଝାଇଁମରା ରୋଗରୁ ଆକୁ ସୁରକ୍ଷା ପ୍ରଦାନ କରି ଆସୁଥିଲେ । ଦିନ ଥିଲା ଆମ ପ୍ରଦେଶର ଅରଣ୍ୟ ଥିଲା ସମୁଦାୟ ସ୍ଥଳ ଭାଗର ଏକ ତୃତୀୟାଂଶରୁ ଯଥେଷ୍ଟ ଅଧିକ କିନ୍ତୁ ଏବେ ଆମେ ଏହା ସଂପର୍ଣ୍ଣ ଭାବେ ନହେଲେ ମଧ ବହୁ ମାତ୍ରାରେ ହରାଇ ବସିଲୁଣି । ଯଦି ପ୍ରକୃତ ତଥ୍ୟ ନିଆଯାଏ ତେବେ ଆମ ପ୍ରଦେଶରେ ଖୁବ୍ ବେଶୀରେ ୬ରୁ ୭ ପ୍ରତିଶତ ଘଞ୍ଚ ବା ବହଳିଆ ପ୍ରାକୃତିକ ଜଙ୍ଗଲ ଥିବ କି ନାହିଁ ସନ୍ଦେହ ।

**ତୃତୀୟଟି ମାଇକ୍ରୋକ୍ଲାଇମେଟ :** ଉଦାହରଣ ସ୍ୱରୂପ ଆମ ରାଜଧାନୀ ଭୁବନେଶ୍ୱରର ଅଭ୍ୟୁଦୟ ପୂର୍ବରୁ ସେଠାରେ ଥିଲା ଉତ୍ତର କ୍ରାନ୍ତୀୟ ବୃକ୍ଷବହୁଳ ଚନ୍ଦକା ଅରଣ୍ୟ । ଯାହାକୁ କି ସମ୍ପୂର୍ଣ୍ଣ ଭାବେ ଧ୍ୱଂସ କରାଯାଇ ନୂତନ ରାଜଧାନୀ ଗଢ଼ି ଉଠିଥିଲା । ନୂତନ ନଗରୀର ସ୍ୱାତନ୍ତ୍ର୍ୟ ରକ୍ଷା କରିବାକୁ ଯାଇ ରାସ୍ତାରେ ଦୁଇ ପାର୍ଶ୍ୱରେ ସ୍ଥାନୀୟ ବୃକ୍ଷମାନଙ୍କୁ ଉପେକ୍ଷା କରାଯାଇ ବହୁ ବିଦେଶୀ ବୃକ୍ଷ ଲାଗିଥିଲା । ବୃକ୍ଷମାନେ ଦେଶୀୟ ହୁଅନ୍ତୁ କିମ୍ବା ବିଦେଶୀୟ ହୁଅନ୍ତୁ ପ୍ରତ୍ୟେକ ବୃକ୍ଷର ପରିବେଶ ପ୍ରତି ନିଶ୍ଚିତ ଭାବେ କିଛି ନା କିଛି ଦାୟିତ୍ୱ ଥାଏ ଏବଂ ମିଳିତ ଭାବେ ସେମାନେ ତାହା ତୁଲାନ୍ତି । ସେସବୁ ମଧରେ ସ୍ଥାନୀୟ ପରିବେଶର ଆର୍ଦ୍ରତା ରକ୍ଷା କରିବା ଏବଂ ଅଂଶୁ ବା ସୌରପ୍ରକୋପକୁ ପ୍ରଶମିତ କରିବା ସେମାନଙ୍କ ପ୍ରଧାନ କାର୍ଯ୍ୟସୂଚୀ ମଧରୁ ଅନ୍ୟତମ । ଏହା କେବଳ ସମ୍ଭବ ହୋଇପାରେ ସେମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ମାଇକ୍ରୋ କ୍ଲାଇମେଟ ମାଧମରେ । ଏହାର ତାତ୍ପର୍ଯ୍ୟ ହେଲା କୌଣସି ଏକ ସ୍ଥାନର ସାଧାରଣ ଜଳବାୟୁ ଯାହା ହେଉନା କାହିଁକି, ଯଦି ସେହି ସ୍ଥାନରେ ଗୁଡ଼ିଏ ବୃକ୍ଷ, ହ୍ରଦ, ଜଳାଶୟ, ଜଳଭଣ୍ଡାର, ନଦୀ ଏବଂ ଝରଣା ମଧରୁ କେହି ରହିଥାଏ, ତା'ହେଲେ ସେହି ସ୍ଥାନର ଜଳବାୟୁ ଅଥବା ପରିବେଶକୁ ସେ ନିଶ୍ଚିତ ଭାବେ ପ୍ରଭାବିତ କରେ । ଯାହାକୁ ଅନ୍ୟ ନାମରେ 'ମାଇକ୍ରୋ କ୍ଲାଇମେଟ୍ ବା 'ମାଇକ୍ରୋ ପରିବେଶ' କୁହାଯାଇପାରେ । କେବଳ ଜାତୀୟ ରାଜପଥ କାହିଁକି ଆମ ପ୍ରଦେଶର ପ୍ରତ୍ୟେକ ପ୍ରାଦେଶିକ ପ୍ରଧାନ ପ୍ରଧାନ ରାସ୍ତା ଓ ଦ୍ରୁତଗାମୀ ରାସ୍ତାର ଉଭୟ ପାର୍ଶ୍ୱରେ ଏହିପରି ବହୁ କରତକଳ ଦେଖିବାକୁ ମିଳିବ । ସ୍ୱୟଂ ଆମ ରାଜଧାନୀ ଭୁବନେଶ୍ୱରରେ ମଧ ଏହି ଅବସ୍ଥା ଦେଖିବାକୁ ଅଭାବ ନାହିଁ । ଜଙ୍ଗଲ

ସରି ସରି ଆସୁଥିବା ସହିତ କରତ କଳ ବଢ଼ି ବଢ଼ି ଚାଲିଛି । ମାନ୍ୟବର ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶ ଅନୁଯାୟୀ କୌଣସି ଜଙ୍ଗଲ ସୀମା ଠାରୁ ଦଶ କିଲୋମିଟର ବ୍ୟବଧାନ ମଧ୍ୟରେ କୌଣସି କରତ କଳ ଚାଲିପାରିବ ନାହିଁ । କିନ୍ତୁ ଏହା କ'ଣ ପାଳନ କରାଯାଉଚି ? ଏଥିରୁ ସ୍ୱୀକୃତିପ୍ରାପ୍ତ କେତେ ଓ ଅପ୍ରାପ୍ତ କେତେ ତାହା ଖୋଦ୍ ସରକାର ହିଁ କହିପାରିବେ । ଯଦି ଏହିଭଳି ଆମ ଶାସନ ଚାଲେ ଏବଂ ରାଜ୍ୟର ବୃକ୍ଷସବୁ ଲୋପ ପାଇଯାଏ, ତା'ହେଲେ କେବଳ ଖରାଦିନେ କାହିଁକି ଅଂଶୁଘାତ ଯେ ସବୁ ସମୟରେ ଲାଗି ରହିବ ତାହା କହିବା କେବେହେଲେ ଅଯୌକ୍ତିକ ହୋଇପାରେନା । ଉପକୂଳ ସଭ୍ୟତା ଯେ ତେକେବେଳେ ନିରାପଦ ନୁହେଁ, ତାହା ୧୯୯୮ର ଅଂଶୁଘାତ ଜନିତ ମୃତ୍ୟୁ ସାଙ୍ଗକୁ ୧୯୯୯ର ମହାପ୍ରଳୟ ପ୍ରମାଣିତ କରିଦେଇ ପାରିଛି । ଏହାର ଚାକ୍ଷୁସ ପ୍ରମାଣ ସ୍ୱରୂପ ଆମ ପ୍ରଦେଶର ଜଳବାୟୁକୁ ଯେଉଁ ବତ୍ରିଶ ପ୍ରକାର ଆଞ୍ଚଳିକ ଅରଣ୍ୟ ନିୟନ୍ତ୍ରଣ କରି ରଖିଥିଲା, ସେମାନଙ୍କର ଭୌଗୋଳିକ ପରିଚୟ ଆଉ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ବତିଶ ପ୍ରକାର ଆଞ୍ଚଳିକ ଅରଣ୍ୟ :**

(୧) ଓଡ଼ିଶା କ୍ରାନ୍ତୀୟ-ଅର୍ଦ୍ଧ-ଚିରହରିତ ଅରଣ୍ୟ
(୨) ବେତବଣ
(୩) ଆଦ୍ର ବାଉଁଶ ବଣ
(୪) ମାଧମ ଆଦ୍ର ବାଉଁଶ ବଣ
(୫) କିଞ୍ଚିତ ଆର୍ଦ୍ର ଶାଗୁଆନ ଜଙ୍ଗଲ
(୬) ଦକ୍ଷିଣ ଆର୍ଦ୍ର ମିଶ୍ରିତ ପର୍ଣ୍ଣମୋଚୀ ଅରଣ୍ୟ
(୭) ଦକ୍ଷିଣ ମଧମ ଆର୍ଦ୍ର ମିଶ୍ରିତ ପର୍ଣ୍ଣମୋଚୀ ଅରଣ୍ୟ
(୮) ଅତ୍ୟନ୍ତ ଆର୍ଦ୍ର ଉପଦ୍ୱୀପ (ଉପକୂଳ) ଶାଳ ଅରଣ୍ୟ
(୯) ଆର୍ଦ୍ର ଉପକୂଳ ଶାଳ ଅରଣ୍ୟ
(୧୦) ଆର୍ଦ୍ର-ଖୋଲା-ଶାଳ-ଘାସ-ଅରଣ୍ୟ
(୧୧) ଅସନ ଜଙ୍ଗଲ
(୧୨) ନିମ୍ନପଟୁ ଚଢ଼ା-ଖୋଲା-ଘାସ-ବୃକ୍ଷ ଅରଣ୍ୟ
(୧୩) ତଟ ଦେଶୀୟ ଅରଣ୍ୟ (ସମୁଦ୍ର ତୀରବର୍ତ୍ତୀ ଅରଣ୍ୟ)

(୧୪) କୁଆରିଆ-କଛଭୂମି ଅରଣ (ନଦୀ ମୁହାଣ ଜଙ୍ଗଲ)

(୧୫) ହେନ୍ତାଳ-କଚ୍ଛଭୂମି ଅରଣ୍ୟ (ଇଂରାଜୀରେ ପାମି ଟେ)

(୧୬) ଉପପାର୍ବତୀୟ ପାହାଡ଼ି-ଉପତ୍ୟକା ସନ୍ତସନ୍ତିଆ ଅରଣ୍ୟ

(୧୭) ତଟ-ପ୍ରାନ୍ତୀୟ ଅରଣ୍ୟ

(୧୮) ଶୁଷ୍କ ଶାଗୁଆନ ଅରଣ୍ୟ

(୧୯) ଶୁଷ୍କ ଉପଦୀପ ଶାଳ ଅରଣ୍ୟ

(୨୦) ଉତ୍ତର ଶୁଷ୍କ ମିଶ୍ରିତ ପର୍ଣ୍ଣମୋଚୀ ଅରଣ୍ୟ

(୨୧) ଶୁଷ୍କ ପର୍ଣ୍ଣମୋଚୀ ବୁଦା ଅରଣ୍ୟ

(୨୨) ଶୁଷ୍କ ଖୋଲା ଘାସ ଅରଣ୍ୟ

(୨୩) ଶୁଷ୍କ ଘାସ ଭୂମି

(୨୪) ସାଲେଇ ଅରଣ୍ୟ

(୨୫) ଅଞ୍ଜନ ବୃକ୍ଷ ଅରଣ୍ୟ

(୨୬) ବେଲ ବଣ ଅରଣ୍ୟ

(୨୭) ମାଙ୍କଡ଼ା ମୃତ୍ତିକା ବଣ୍ଡା ଅରଣ୍ୟ

(୨୮) ଶୁଷ୍କ ବାଉଁଶ ବଣ

(୨୯) ଦକ୍ଷିଣ ଶୁଷ୍କ କ୍ରାନ୍ତୀୟ ନଦୀତଟ ଜଙ୍ଗଲ

(୩୦) ଖଇର ଶିଶୁ ଅରଣ୍ୟ

(୩୧) ମାଧ୍ୟମିକ ଶୁଷ୍କ ପର୍ଣ୍ଣମୋଚୀ ଅରଣ୍ୟ

(୩୨) ମଧ୍ୟଭାରତୀୟ ଉପକ୍ରାନ୍ତୀୟ ପାହାଡ଼ିଆ ଅରଣ୍ୟ

୧୯୯୮ରେ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଅଂଶୁଘାତ ବିଶେଷ ଭାବେ ପ୍ରଭାବ ପକାଇଥିଲା । ଏହାର କାରଣ ହେଲା, ଉପକୂଳ ଅଞ୍ଚଳରୁ ତଟଦେଶୀୟ ଅରଣ୍ୟ, କୁଆରିଆ କଚ୍ଛଭୂମି ଅରଣ୍ୟ ଏବଂ ହେନ୍ତାଳ କଚ୍ଛଭୂମି ଅରଣ୍ୟର ବିଲୋପ ସାଙ୍ଗକୁ ଉପକୂଳବାସୀଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ବୃକ୍ଷ ଉପବନ ବା ମାଇକ୍ରୋ ଜଙ୍ଗଲର କରତ କଳ ମାଧ୍ୟମରେ ସମ୍ପୂର୍ଣ୍ଣ କ୍ଷୟ ଯାହାକି ସମୟେ ସମୟେ ଦୈନିକ ଖବରକାଗଜମାନଙ୍କରେ ଦେଖିବାକୁ ମିଳୁଥିଲା ।

## ଆମ ପ୍ରତି ପ୍ରକୃତିର ବିଦ୍ରୂପ

ବିଶେଷକରି ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ରୌଦ୍ରାଘାତର ପ୍ରଧାନ କାରଣ ହେଲା ସମୁଦ୍ରରୁ ସ୍ଥଳଭୂଗକୁ ପ୍ରବାହିତ ହେଉଥିବା ଲବଣାକ୍ତ ବାୟୁ । ରୌଦ୍ରତାପର ଆଧିକ୍ୟ ସହିତ ଏହି ଲବଣାକ୍ତ ବାୟୁ ଯୋଗ ଦେଇ ମନୁଷ୍ୟର ଶାରୀରିକ ଉତ୍ତାପ ବଢ଼ାଇବାରେ ସାହାଯ୍ୟ କରେ । ମଣିଷ ଶରୀରରେ ବିଶେଷ ଲୋମ ନଥିବାରୁ ଏହି ଲବଣାକ୍ତ ବାୟୁ ମଣିଷର ଲୋମକୂପ ବା ଲୋମଛିଦ୍ର ମଧ୍ୟରେ ପ୍ରବେଶ କରି ଏହି ସମସ୍ତ ଛିଦ୍ରକୁ ରୁଦ୍ଧ କରିଦିଏ । ଏଣୁ ମଣିଷ ଶରୀରର ଉତ୍ତାପ ବାୟୁମଣ୍ଡଳ ସହିତ ସାମ୍ୟତା ରକ୍ଷା କରି ନପାରି ବଢ଼ି ବଢ଼ି ଚାଲେ । ଶରୀରର ଉତ୍ତାପ ବଢ଼ିବାରୁ ଶରୀରରେ ସ୍ନାୟୁବିକ୍ ସ୍ଖଳନ ଘଟେ ଏବଂ ମସ୍ତିଷ୍କର ହାଇପୋଥାଲମସ୍ ଯେ କି ଶରୀର ସମସ୍ତ ଅଙ୍ଗର ଉତ୍ତାପକୁ ନିୟନ୍ତ୍ରଣ କରେ ଦୁର୍ବଳ ହୋଇ କର୍ତ୍ତବ୍ୟ ରହିତ ହୋଇଯାଏ । ଶରୀରର ଉତ୍ତାପ ବଢ଼ି ବଢ଼ି ଚାଲିଲେ, ଶରୀରରୁ ଜଳାଂଶ ଓ ଲବଣାଂଶ ଉଭୟ ହ୍ରାସ ପାଇବାରେ ଲାଗେ ଏବଂ ଶରୀରର ସ୍ୱାଭାବିକ ଉତ୍ତାପ ୩୭° ସେଲସିୟସ୍‌କୁ ଟପି ୪୨°ରେ ପହଞ୍ଚିଲେ ଲୋକର ହୃଦ୍‌ଘାତ ଜନିତ ମୃତ୍ୟୁ ହୁଏ । ଆମ ଉପକୂଳ ଅଞ୍ଚଳରେ ଏପରି କ୍ଷେତ୍ର ବିସ୍ତୃତ ହେବାର ଗୋଟିଏ ମାତ୍ର କାରଣ ହେଲା, ଉପକୂଳ ଜଙ୍ଗଲ ନଷ୍ଟ ହେବା ସହିତ ମନୁଷ୍ୟକୃତ ଉପକୂଳ ଉପବନ ବା ମାଇକ୍ରୋ କ୍ଲାଇମେଟ୍ ଧ୍ୱଂସ ପାଇଥାଏ । ଯେଉଥିପାଇଁ ସମୁଦ୍ରର ଅପ୍ରତିଦ୍ୱନ୍ଦ୍ୱୀ ଦୂଷିତ ଲବଣାକ୍ତ ବାୟୁ ଭୂଭାଗର ବିସ୍ତୃତ ଅଞ୍ଚଳକୁ ମାଡ଼ି ଆସି ସମସ୍ତ ଉପକୂଳ ପରିବେଶକୁ ନଷ୍ଟ କରିବାକୁ ସକ୍ଷମ ହେବା ସହିତ ରୌଦ୍ର ନିର୍ଯାତନା ଉପକୂଳବାସୀଙ୍କ ଉପରେ ଲଦି ଦେଇଛି । ଖରାଦିନେ ବିଶେଷଭାବେ ଏହା ଦେଖିବାକୁ ମିଳେ, କାରଣ ସ୍ଥଳଭାଗ ଅପେକ୍ଷା ଜଳଭାଗ ଶୀଘ୍ର ଉତ୍ତପ୍ତ ହେବା ଯୋଗୁ ସମୁଦ୍ର ବକ୍ଷରେ ଲଘୁଚାପ ବଳୟ ସୃଷ୍ଟି ହୋଇ ସମୁଦ୍ରର ଲଘୁ ଲବଣାକ୍ତ ବାୟୁ ଭୂପୃଷ୍ଠକୁ ପ୍ରବାହିତ ହୁଏ ଏବଂ ଭୂପୃଷ୍ଠର ଗୁରୁବାୟୁ ସମୁଦ୍ର ଦିଗରେ ଗତି କରି ଲଘୁବାୟୁର ସ୍ଥାନ ପୂରଣ କରେ । ଏପ୍ରକାର ପ୍ରାକୃତିକ ପ୍ରକ୍ରିୟା ଦ୍ୱାରା ଉପକୂଳ ଅଞ୍ଚଳରେ ଗଢ଼ିଉଠେ ଏକ ପ୍ରକାର ମୃତ୍ୟୁ ଯନ୍ତ୍ରଣାର ବଳୟ । ଆମ ରାଜଧାନୀ କିମ୍ବା ଖୋର୍ଦ୍ଧା ଜିଲ୍ଲା ସମୁଦ୍ର ଠାରୁ ବେଶୀ ଦୂରରେ ନାହାନ୍ତି । ଏହାର ପରିସୀମା ୨୦୦ କି.ମି. ବ୍ୟବଧାନ ରକ୍ଷା କରୁଥିବା ଢେଙ୍କାନାଳ ଜିଲ୍ଲାକୁ ମଧ୍ୟ ବୃଦ୍ଧି ପାଇବାରେ ଲାଗିଲାଣି, ଯାହା ଦେଖାଗଲା ଗତ ବର୍ଷ ନଭେମ୍ବର ମହାବାତ୍ୟାରେ କ୍ରମଶଃ ଏ ବିଷୟ ସବୁ ସମୟରେ ମନେ ରଖିବାକୁ ହେବ ଯେ, ପ୍ରକୃତି ସବୁବେଳେ ଚାହେଁ ଜୀବଜଗତକୁ ଅଥବା ଜୈବ ମହଲକୁ ସ୍ୱୟଂ ସମ୍ପୂର୍ଣ୍ଣ ଏବଂ ସ୍ୱୟଂଚାଳିତ ରଖିବାକୁ ଯାହାକୁ କି ମଣିଷ ସବୁ ସମୟରେ ଉପେକ୍ଷା କରିଆସିଛି । ଏଣୁ ରୌଦ୍ର ନିର୍ଯାତନାକୁ ରକ୍ଷା ପାଇବାକୁ ହେଲେ ଉପକୂଳ ଲୁଣା ଜଙ୍ଗଲକୁ ସମ୍ପୂର୍ଣ୍ଣ ସୁରକ୍ଷିତ ରଖିବା ସହିତ କ୍ରମଶଃ ସ୍ଥଳ ଭାଗରେ ଉପବନ (ମାଇକ୍ରୋ

ପରେଷ୍ଟ) ସୃଷ୍ଟି କରି ରୌଦ୍ର ପ୍ରକୋପକୁ ପ୍ରତିହତ କରିବାକୁ ପଡ଼ିବ । ଉପବନ ସୃଷ୍ଟି କରିବାକୁ ହେଲେ ପ୍ରକୃତିକୁ ଶିକ୍ଷକ କରିବାକୁ ହେବ । ଲୁଣାଜଙ୍ଗଲ ବା ସମୁଦ୍ର ତୀର ଅରଣ୍ୟରେ ଯେଉଁସବୁ ଉଦ୍ଭିଦ ବା ବୃକ୍ଷ ମିଳନ୍ତି, ସେସବୁ ବୃକ୍ଷ କିମ୍ବା ସମଜାତୀୟ ବୃକ୍ଷକୁ ପ୍ରାଧାନ୍ୟ ଦେବାକୁ ପଡ଼ିବ । ସମୁଦ୍ର ତୀର ଲୁଣା ଜଙ୍ଗଲରେ ଯେଉଁସବୁ ବୃକ୍ଷ ପ୍ରକୃତି ଦ୍ୱାରା ସୃଷ୍ଟ ସେସବୁ ବୃକ୍ଷ ଚିରହରିତ ଅର୍ଥାତ ଏଭରଗ୍ରୀନ୍ ଏବଂ ସେମାନଙ୍କର ପତ୍ର ଦେଖିବାକୁ ଚିକ୍‌କଣ ତେଲିଆ ଏବଂ ମୋଟା । ଏଠାରେ ପ୍ରକୃତିର ହେଉଛି ଏହା ବିଚିତ୍ରତା । ତାଇଁ ଟାଣ ଖରା ଓ ଲୁଣା-ବାୟୁର ଉଦ୍ଭିଦମାନଙ୍କୁ ରକ୍ଷା କରିବାକୁ ଯାଇ ସେମାନଙ୍କୁ ସ୍ୱୟଂସମ୍ପୂର୍ଣ୍ଣ କରିପାରିଛି ଏହି ବ୍ୟବସ୍ଥା ମାଧମରେ । ଏଣୁ ଆମକୁ ଉପକୂଳ ଏଣୁ ଆମକୁ ଉପକୂଳ ଏବଂ ରାସ୍ତା ପାର୍ଶ୍ୱ ବନରାଶି ସୃଷ୍ଟି କରିବାକୁ ହେଲେ ବିଶେଷ କରି ଚିରହରିତ ବୃକ୍ଷସବୁକୁ ପ୍ରାଧାନ୍ୟ ଏବଂ ଅଗ୍ରାଧିକାର ଦେବାକୁ ହେବ । କାରଣ ତେଲିଆ ପତ୍ର ବିଶିଷ୍ଟ ବୃକ୍ଷମାନେ ରୌଦ୍ର ନିର୍ଯାତନାକୁ ପ୍ରତିହତ କରିବାକୁ ସବୁ ସମୟରେ ସକ୍ଷମ ହୁଅନ୍ତି । ଏହିସବୁ ପ୍ରାକୃତିକ ପରିକଳ୍ପନାକୁ ଆଧାର କରି ଆମର ବୃକ୍ଷରାଜି ଏବଂ ବୃକ୍ଷମଣ୍ଡଳ ବା ଉପବନ ସ୍ଥଳ ବା ସ୍ଥାନଭିତ୍ତିକ (ସାଇଟ୍ ସ୍ପେସିଫିକ୍) ହେବା ସର୍ବାଦୌ ଉଚିତ । ଏହାସବୁ ଉପଯୁକ୍ତ ପ୍ଲାନିଂ ବା ପରିକଳ୍ପନା ମାଧମରେ ହେବା ମଧ ବିଧେୟ । ଏବେ ଯେପରି ବିନା ପ୍ଲାନିଂରେ ଭାରି ଶସ୍ତା ଓ ପ୍ରଶଂସାଦାୟକ ବୃକ୍ଷ ୟୁକାଲିପଯାସ ଓ ଆକାଶିଆ କାଶ୍ମୀରରୁ କନ୍ୟାକୁମାରୀ ଏବଂ କୋରାପୁଟରୁ ବାଲେଶ୍ୱର ଚାନ୍ଦିପୁର ପର୍ଯ୍ୟନ୍ତ ବିନା ଦ୍ୱିଧାରେ ଲଗାଚାଲିଛି  ତାହା ବନ୍ଦ କରିବାକୁ ହେବ । ବୃକ୍ଷରୋପଣକାରୀ ସଂସ୍ଥା ମାଧମରେ ଏହିସବୁ ଯେଉଁ କାର୍ଯ୍ୟ ଚାଲିଛି ଏହି ଜାତୀୟ ସ୍ୱାର୍ଥର ପରିପନ୍ଥୀ । ଏଣୁ ବିନା ପ୍ଲାନିଂରେ ପ୍ରଦେଶର କୌଣସିଠାରେ ବୃକ୍ଷରୋପଣ ଏଷ୍ଟିମେଟ ବା ପ୍ରାକ୍‌କଳନକୁ ଗ୍ରହଣ କରିବା ବା ମଞ୍ଜୁରୀ ଦେବା ମଧ ଜାତୀୟ ସ୍ୱାର୍ଥର ପରିପନ୍ଥୀ । ଏହା  ଦେଶର ପ୍ରତ୍ୟେକ ନାଗରିକ ଜାଣି ରଖିବା ଉଚିତ । ଏପ୍ରକାର କାର୍ଯ୍ୟ ଲଗାଇବା ସଂସ୍ଥା ଏବଂ ଲଗାଯାଇଥିବା ସଂସ୍ଥାର ସ୍ୱାର୍ଥ ସାଧନ କରିବ ସିନା ଜାତୀୟ ସ୍ୱାର୍ଥର ସାହାଯ୍ୟରେ ଆସିବ ବା ଲାଗିବ ନାହିଁ । ଏଣୁ ଆମର ସୌର-ତାପ ଏବଂ ମହାପ୍ରଳୟରୁ ରକ୍ଷା ପାଇବାକୁ ହେଲେ, 'ଆର୍ଦ୍ରତା ରକ୍ଷାକାରୀ ଚିରହରିତ୍ ବୃକ୍ଷରାଶି ଓ ବୃକ୍ଷବଳୟ' ସୃଷ୍ଟି କରିବାକୁ ହେବ ।

**ଆର୍ଦ୍ରତା ରକ୍ଷାକାରୀ ଚିରହରିତ୍ ଜାତୀୟ ବୃକ୍ଷ ପ୍ରାଚୀର ଓ ଏହାର ପରିକଳ୍ପନା :**

ଏହା କେବଳ ରାସ୍ତା ପାର୍ଶ୍ୱ କାହିଁକି ପ୍ରତ୍ୟେକ ସହର ଉଦ୍ୟାନ, ଗ୍ରାମ୍ୟ ଉଦ୍ୟାନ, ଏବଂ ଯେକୌଣସି କୋଠା ବା ପଞ୍ଚାୟତ ସ୍ଥାନମାନଙ୍କରେ ସୃଷ୍ଟି କରାଯାଇପାରିବ । ଏପ୍ରକାର ଉଦ୍ୟାନ ଦୁଇ କିମ୍ବା ତିନି ଥାକିଆ ହେବା ବିଧେୟ ।

**ପ୍ରଥମ- ଉଚ୍ଚତମ ବୃକ୍ଷଥାକ :**

(କ) ଚିରହରିତ ବୃକ୍ଷ ସମୂହ : (ବ୍ୟବଧାନ ୧୦ ମିଟର) ଲିମ୍ବ, ଜାମୁ, ପଣସ, ବଉଳ, ଆମ୍ବ, ମାଙ୍କଡ଼ା, କେନ୍ଦୁ, ଛତିଅନ, କଦମ୍ବ, ପେସ୍ତାବାଦାମ, ଫାସି, ଗୁଆଲୁ, ଖିରିକୋଳି, ଛୁରାଅନା, କୁସୁମ, ମେହୋଗାନି । ପାଣି ଗମ୍ଭାର, ଜୟଷଣ୍ଢା ।

(ଖ) ସ୍ୱଳ୍ପ ସମୟ ପାଇଁ ପତ୍ର ବିହୀନ ବୃକ୍ଷ ସମୂହ : କରଞ୍ଜ, ଯେଉଠ, ଜରୀ, ଆଶ୍ୱସ୍ତ, ଶିରିଷ, ହରିଡ଼ା, ବାହାଡ଼ା, ଅଁଳା, ଢାଉରଙ୍ଗ, କୋଚିଲା, ରକ୍ତଚନ୍ଦନ, ପିଆଶାଳ, ପାଟୁଳି, ତେନ୍ତୁଳି, କସି, ଅସନ, ମହାଳ, ଅର୍ଜୁନ, ଶିଶୁ, ଶିମିଳି, ଟୁନ୍, ଚମ୍ପା, ବଡ଼ ବିଳାତି, କଇଁଆ, ଚାକୁଣ୍ଡା, ସିଧା, ନାଗବଲି, କୁରୁମ, କେଳିକଦମ୍ବ, କେନ୍ଦୁ, ପାଟୁଳି, କୁସୁମ, ଓଲଟକର, ଗମ୍ଭାରୀ, କାଠବାଦାମ, ଚମ୍ପା ଏବଂ ନାଗବଳୀ ।

**ଦ୍ୱିତୀୟ-ମଧ୍ୟମ ବୃକ୍ଷଥାକ :**

(କ) ଚିରହରିତ ବୃକ୍ଷ ସମୂହ : ନାଗେଶ୍ୱର, ଅଶୋକ, ଚନ୍ଦନ, କାମିଳି, ଡାଳିମ୍ବ, ସିମାରୁବା, ମହାଲିମ୍ବ, ତେଜପତ୍ର, ଲେମ୍ବୁ, ଡାଳଚିନି, ଚା, କଫି, ପୁଲାଙ୍ଗ, ପତ୍ରଞ୍ଜିବା, ଖଟାକମଳା, ଗୋଲାପ, ଜାମୁ, ଜାମୁଓଳ, ପାଣି ଆମ୍ବ, କୁଜିବର, ଭୃସଙ୍ଗ, ନାର୍ଗୁଣା, କରମଙ୍ଗା, ହଞ୍ଜଳ, ହାବେଳି, ତେଲକୋରୁଆ, ସୁଗନ୍ଧ ରାଜ, ଆଛୁ, କମଳାଗୁଣ୍ଡି, ଲିଚୁ ଏବଂ ଆଙ୍କୁଳ ।

(ଖ) ସ୍ୱଳ୍ପ ସମୟ ପାଇଁ ପତ୍ର ବିହୀନ ବୃକ୍ଷ ସମୂହ : ବଢ଼େଇଗୁଡ଼ି, ଅଗସ୍ତି,ଡିମ୍ବିରା, ଜୟନ୍ତୀ, ତୁତ୍‌କୋଳି, ବରୁଣ ନରକୋଳି, ଦୋଳିଚନ୍ଦନ, ଫାର୍ସାକୋଲି, ହେନା, ସୁନାରୀ, ବାଉଁଶ, ପଲାସ, କୁରେଇ, କଂସ, ବେଲ, କାଞ୍ଚନ, ରିଠା, କାଠଚମ୍ପା, ବବୁଲ, ସୀତାଫଳ, କୁମ୍ଭୀ, କୁରେଇ ଆମ୍ବଡ଼ା, କନିଅର, ଗଙ୍ଗଶିଉଳି, ଗୋଡ଼ିବାଣଫୁଲ, କାଞ୍ଚନ, ପାଳଧୁଆ ଓ ବାଗ୍‌ହାକାନ ।

**ତୃତୀୟ ଥାକ ବୃକ୍ଷ ସମୂହ :**

ଲଯାଗୋଲାପ, ଚିନିଚମ୍ପା, ତେଲକୋରୁଆ, ଦାସକେରେଣ୍ଡା, ସପୁରୀ, ମନ୍ଦାର, ହେନା, କରବିର, କେତକୀ, ଟକର , ତରାଟ, ସଦାବିହାରୀ ଇତ୍ୟାଦି ଜମିକୁ ଆବୃତ୍ତ କଲାପରି ବୃକ୍ଷ ଓ ତୃଣ ।

ପ୍ରଦେଶର ଜଙ୍ଗଲ ଧ୍ୱଂସଦ୍ୱାରା ଯେଉଁ ଭୌଗୋଳିକ ଓ ଐତିହାସିକ ଅପରାଧ କରାଯାଇଛି, ତାହାର କିଛିମାତ୍ରାରେ ଭରଣ କରାଯାଇପାରିବ ଯଦି ଉପଯୁକ୍ତ ଯୋଜନା ମାଧ୍ୟମରେ ବୃକ୍ଷରୋପଣ କରାଯାଏ, ଯଦି ଆସ୍‌ଥେଟିକ୍ ବା ସୌନ୍ଦର୍ଯ୍ୟାତ୍ମକ ବୃକ୍ଷରୋପଣ

କାର୍ଯ୍ୟକ୍ରମକୁ ନେଇ ଭଙ୍ଗୁର କୃଷ୍ଣଚୂଡ଼ା ଓ ରାଧାଚୂଡ଼ାର ସ୍ୱପ୍ନ ଦେଖାଯାଏ ପ୍ରକୃତ ଲକ୍ଷ୍ୟ ତ ପୂରଣ ହେବ ନାହିଁ, ମହାବାତ୍ୟାରୁ ମହାନିଦ୍ରା ହିଁ ସାର ହେବ ।

ଆର୍ଦ୍ରତା ବୃଦ୍ଧିକାରୀ ବୃକ୍ଷ ରୋପଣ ସାଙ୍ଗକୁ ଗ୍ରୀଷ୍ମଋତୁରେ ସବୁସମୟରେ କେନାଲ (ନାଳ) ମାନଙ୍କରେ ନାଳପାଣି ଛାଡ଼ିବାକୁ ହେବ, ଏବଂ ଗ୍ରୀଷ୍ମଋତୁ ପୂର୍ବରୁ ସହର ଏବଂ ଗ୍ରାମମାନଙ୍କରେ ଥିବା ସବୁ ପୁଷ୍କରିଣୀ, ଜଳାଶୟଗୁଡ଼ିକର ପୁନରୁଦ୍ଧାର କରାଯାଇ ସେଥିରେ ନାଳପାଣି ଭରି ଦେବାକୁ ହେବ । ଏହାଦ୍ୱାରା ତିନୋଟି କାର୍ଯ୍ୟ ସାଧିତ ହୋଇଥାଏ । ପ୍ରଥମ ହେଲା ବାଟୋଇକୁ ଶୋଷ ହେଲେ ଉତ୍‌କ୍ଷଣାତ୍ ତୃଷ୍ଣା ମେଣ୍ଟିଥାଏ । ଦ୍ୱିତୀୟ ହେଲା, ବାୟୁମଣ୍ଡଳର ଆର୍ଦ୍ରତା ରକ୍ଷା ହୁଏ । ତୃତୀୟରେ ଜାତୀୟ ବୃକ୍ଷ ଚାଷ ପାଇଁ ପର୍ଯ୍ୟାପ୍ତ ପାଣିର ସୁବିଧା ହୋଇଥାଏ ।

**ଅଂଶୁଘାତ ନିବାରଣ ବିଧି ବା ସ୍ୱାସ୍ଥ୍ୟରକ୍ଷାର ନିୟମ :**

ଗ୍ରୀଷ୍ମଋତୁରେ ଘରୁ ବାହାରକୁ ବାହାରିଲେ, ଏହି ଉପକ୍ରମମାନ ପାଳନ କରିବା ବିଧେୟ । ଘରେ ଥାଇ ମଧ୍ୟ ଗ୍ରୀଷ୍ମର ପ୍ରକୋପକୁ ଲାଘବ କରିବାକୁ କେତେକ ସ୍ୱଦେଶୀୟ ଆଚାର ରକ୍ଷା କରିବା ଉଚିତ ହେବ ।

(୧) ଗାଧୋଇଲା ପୂର୍ବରୁ ଅଭ୍ୟାସ କରି ମୁଣ୍ଡରେ ତେଲ ଲଗାଇବା ବ୍ୟକ୍ତିଙ୍କୁ ଖରା ବିଶେଷ କ୍ଷତି କରିପାରେ ନାହିଁ । ତେଣୁ ଖରାଦିନେ ବାହାରକୁ ବାହାରିଲେ ମୁଣ୍ଡକୁ ତେଲିଆ ରଖିବାକୁ ହେବ ।

(୨) ଓଦା ଧଳା ଗାମୁଛା ଦ୍ୱାରା ମୁଣ୍ଡ, କାନ ଏବଂ ନାକକୁ ଆବୃତ୍ତ କରି ଏବଂ ଶୁଖା ହରିଡ଼ାର ବହଳ ଚୋପାକୁ ଅଥବା ଶୁଖା କିମ୍ବା କଞ୍ଚା ଅଁଳା ଫଳକୁ ପାଟି କଳରେ ଜାକିବାକୁ ହେବ ।

(୩) ଧଳା କନା ମଡ଼ାଯାଇଥିବା ଛତା, ବାଉଁଶ ଝାମ୍ପି, ତାଳପତ୍ର ଛତା, ପଖିଆର ବ୍ୟବହାରିକ ଅଭ୍ୟାସ ସହିତ ମୁଣ୍ଡରେ ସୋଲ କ୍ୟାପ (ଟୋପି) କିମ୍ବା ପ୍ରଚଳିତ ଯେକୌଣସି ମୁଣ୍ଡକୁ ସୁରକ୍ଷା ପ୍ରଦାନ କରୁଥିବା ବ୍ୟବସ୍ଥାକୁ ପାଳନ କରିବାକୁ ହେବ ।

(୪) ଖରା ବାଧିଲେ ମଝିରେ ମଝିରେ ଦେହକୁ ଓଦା ଗାମୁଛାରେ ପୋଛି ଦେବାକୁ ହେବ ।

(୫) ପାଦରେ ପୂରା ଯୋତା ପିନ୍ଧିବା ସବୁଠାରୁ ଉତ୍ତମ ବ୍ୟବସ୍ଥା । କାରଣ ପାଦ ମାଧ୍ୟମରେ ବାହାରର ଉତ୍ତାପ ଶୀଘ୍ର ଶରୀରକୁ ଆକ୍ରାନ୍ତ କରିଥାଏ ।

(୬) ଆମ କ୍ରାନ୍ତୀୟ ଜଳବାୟୁର ଢିଲା ପୋଷାକ ଯଥା ଧଳା ଲୁଗା ସୂତା ଢିଲା ପଞ୍ଜାବୀ ବା ଢିଲା ପୂରା ସାର୍ଟ ପିନ୍ଧିବାକୁ ହେବ । ଏହା ସହିତ ଆଖିରେ କଳା ଚଶମା ଥିବା ମଧ୍ୟ ଶୁଭପ୍ରଦ ।

(୭) ଖରାଦିନେ ମୁଣ୍ଡରେ ବାଳ ରିହିବା ବିଶେଷ ସ୍ୱାସ୍ଥ୍ୟପ୍ରଦ ।

(୮) ସ୍କୁଲ ଓ କଲେଜ ଛାତ୍ରଛାତ୍ରୀଙ୍କୁ ସୂତାବସ୍ତ୍ର ପରିଧାନ କରିବାକୁ ଉପଦେଶ ମାଧ୍ୟମରେ ପ୍ରବର୍ତ୍ତାଇବା ଉଚିତ ହେବ ।

(୯) ଆମ କ୍ରାନ୍ତୀୟ ଜଳବାୟୁର ଖାଦ୍ୟ ହେଲା 'ପଖାଳ' । ଖରାଦିନେ ଶରୀରରୁ ତାପ ନିୟନ୍ତ୍ରଣାଧୀନ ରଖିବାକୁ ହେଲେ ଏହାକୁ ରିତିମତ ଖାଇବାକୁ ହେବ । ଦହି ପଖାଳ ସବୁ ସ୍ୱାସ୍ଥ୍ୟପ୍ରଦ ।

(୧୦) ଖରାଦିନେ ପ୍ରଚୁର କାକୁଡ଼ି, ତରଭୁଜ, ଖରଭୁଜି, ପାଣିସିଙ୍ଗଡ଼ା, ତାଳସଜ, ପଇଡ଼, ବିଲାତି ବାଇଗଣ, ସାଲାଡ଼ ଖାଇବା ଦରକାର । ବସା ଦହି ଅପେକ୍ଷା ଘୋଳ ଦହି ଅତି ଉତ୍ତମ । ସ୍କୁଲ, କଲେଜ ପିଲାମାନଙ୍କୁ ପାଣି ପରିବର୍ତ୍ତେ ଘୋଳଦହି ପାଣି ବୋତଲରେ ଦେବ ଉଚିତ । ଗସ୍ତରେ ଯାଉଥିବା କର୍ମଚାରୀମାନେ ପାଣି ସହିତ ଚହ୍ଲା ବା ଘୋଳ ଦହି ସାଙ୍ଗରେ ନେବା ବିଶେଷ ଉପକାରୀ । କିନ୍ତୁ ବହୁ ପ୍ରଚାରିତ କୃତ୍ରିମ ଖାତିର ଦାୟକ ମୃଦୁପାନୀୟ ବା ସଫ୍‌ଟ ଡ୍ରିଙ୍କ ନୁହେଁ । ମଧ୍ୟପାନ କରି ଗସ୍ତରେ ଯିବା ମୋଟେ ବାଞ୍ଛନୀୟ ନୁହେଁ, ବରଂ ସର୍ବାଦୌ ଅବାଞ୍ଛନୀୟ ।

(୧୧) ଖରାଦିନେ ମାଛ, ମାଂସ କିମ୍ବା ଗୁରୁପାକ ଖାଦ୍ୟ ଯେତେ କମ୍ ଖାଇବ କିମ୍ବା ମୋଟେ ନଖାଇବ, ତାହା ସବୁଠାରୁ ସ୍ୱାସ୍ଥ୍ୟପ୍ରଦ । ଶାକାନ୍ନଭୋଜୀ ଶରୀର ଉତ୍ତାପକୁ ବିଶେଷଭାବେ ନିୟନ୍ତ୍ରିତ କରିପାରେ ।

(୧୨) ପଦାକୁ ଯିବାର ଥିଲେ ଆମ ଦେଶୀୟ ପ୍ରସ୍ତୁତି ସ୍ୱଚ୍ଛା ଜଳ ଥାଇ ତୋରାଣୀ ବା ଛିର ତୋରାଣି, ତୋରାଣିକୁ ଲେମ୍ବୁରସ ସାମାନ ଲୁଣ ଦେଇ ଲେମ୍ବୁ ପତ୍ର ଦଳା ପାଣି ସହିତ ଖୁବ୍ କମ୍ ଚିନି ସାମାନ୍ୟ ଲୁଣ ଦେଇ, ପୋଡ଼ା ଆମ୍ବ ଚିନିଦିଆ ସର୍ବତ ମଧ୍ୟରୁ ଯେକୌଣସି ଗୋଟିଏ ଯଥେଷ୍ଟ ପିଇବାକୁ ହେବ । ଏବଂ ସଙ୍ଗରେ ଧରିଥିଲେ ବିଶେଷ ସାହାଯ୍ୟ କରିଥାଏ ।

(୧୩) ଆୟୁର୍ବେଦୀୟ ହିତୋପଦେଶ :

(କ) ଅଂଶୁଘାତରୁ ରକ୍ଷା ପାଇବାକୁ ହେଲେ ଗୋରକ ଅମଳି ଅଥବା ମଙ୍କି ବ୍ରେଡ଼ି ଟ୍ରିର ମାଂସଳ ଫଳ ଅଂଶକୁ ସର୍ବତ କରି ଖାଇବାକୁ ହେବ । ଏହି ଫଳ ଚେରମୂଳ ଦୋକାନରେ ମିଳେ ।

(ଖ) ଧଣିଆକୁ ଚିନି ସହିତ ବାଟି ସର୍ବତ କରି ପିଇଲେ ରୌଦ୍ରଘାତରୁ ଉପଶମ ମିଳେ ।

(ଗ) ଅଂଶୁଘାତ ପୀଡ଼ିତ ରୋଗୀଙ୍କୁ ବ୍ରାହ୍ମୀ ରସ, ଜିରା ଏବଂ ଚିନିକୁ ଏକତ୍ର ବାଟି କରି ଖାଇବାକୁ ଦେବା ସହିତ ଏହି ଦ୍ରବ୍ୟ ବାଟଣରେ କନାକୁ ଭିଜାଇ ସେହି ଓଦା କନାକୁ ନାହିମୁଣ୍ଡାରେ ଥଣ୍ଡା-ଚାପ ଦେଲେ ରୋଗୀର ଯନ୍ତ୍ରଣା ଲାଘବ ହୋଇଥାଏ ।

(ଘ) ଶୁଖିଲା ମେଥି ଶାଗ ଗଛକୁ ଥଣ୍ଡାପାଣିରେ କିଛି ସମୟ ଭେଦାଇ ସେହି ମେଥି ଶାଗ ଭେଦା ପାଣି ସହିତ (ସେହି) ମେଥିଗଛକୁ ବାଟି, ସେହି ବାଟଣକୁ ସଫା କନାରେ ଛାଣି (ସେହି) ଛଣା ଦ୍ରବ୍ୟକୁ ମହୁ ସହିତ ରୋଗୀକୁ ଖାଇବାକୁ ଦେବାପାଇଁ ହେବ । ଖରାଦିନେ ପ୍ରଚୁର ମେଥିଶାଗ ଖାଇବା ଅତି ଉତ୍ତମ ।

(ଙ) ରୋଗୀକୁ ବରଫ ମିଶ୍ରିତ ଥଣ୍ଡା ପାଣିରେ ଗାଧୋଇ ଦେଇ କଞ୍ଚା ଆମ୍ବ ରସ ଖାଇବାକୁ ଦେବାକୁ ହୁଏ । ଆମ୍ବକୁ ପୋଡ଼ି ସେହି ପୋଡ଼ା ଆମ୍ବରସକୁ ଚିନି ସହିତ ମିଶ୍ରଣ କରି ରୋଗୀକୁ ପିଇବାକୁ ଦିଆଯାଇପାରେ ।

(ଚ) ଚମ୍ପାଫୁଲକୁ ରାଶିତେଲରେ ଶିଝାଇ ଖରାଦିନେ ସେହି ତେଲକୁ ମୁଣ୍ଡରେ ଲଗାଲେ ଅଂଶୁଜନିତ ମୁଣ୍ଡବ୍ୟଥା ଦୂର ହୋଇଥାଏ ।

(ଛ) ଲିମ୍ବଫୁଲ ଏବଂ ପତ୍ରକୁ ଏକତ୍ର ବାଟି ମୁଣ୍ଡରେ ପ୍ରଲେପ ଦେଲେ ସ୍ନାୟୁବିକ ମୁଣ୍ଡବ୍ୟଥା ଦୂର ହୁଏ ।

(ଜ) ପାଣିରେ ହେଉଥିବା ଓ ବଢୁଥିବା ଶାଗ ଯଥା କଲମ, ଛନଛନିଆ, ଡିଡ଼ିମିଚିକା ଯେତେ ଖାଇବେ ତାହା ସ୍ୱାସ୍ଥ୍ୟପକ୍ଷେ ଗ୍ରୀଷ୍ମଋତୁରେ ଅତି ଉତ୍ତମ ।

(ଝ) ଇସବଗୁଲି ଭୂସି ଓ ମିଶ୍ରି ସର୍ବତ ଖରାଦିନେ ଅଭ୍ୟାସ କରି ଖାଇଲେ ଶରୀରର ଉତ୍ତାପ ନିୟନ୍ତ୍ରିତ ହୋଇଥାଏ ।

(ଞ) ରୋଗୀର ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବା ପାଇଁ ନିକଟସ୍ଥ ସ୍ୱାସ୍ଥ୍ୟକେନ୍ଦ୍ର କିମ୍ବା ସ୍ୱୀକୃତିପ୍ରାପ୍ତ ଚିକିତ୍ସକଙ୍କ ପରାମର୍ଶ ନେବା ବାଞ୍ଛନୀୟ ।

* * *

# ସରି ସରି ଆସୁଛି ଶିମିଳିପାଳ

ସମ୍ବାଦପତ୍ରରୁ ଦେଖିବାକୁ ମିଳିଲା ବିଶ୍ୱ ପରିଚିତ ଓଡ଼ିଶାର ଶିମିଳିପାଳ ଜଙ୍ଗଲକୁ 'ଟିକେଟ ଲ୍ୟାଣ୍ଡ ରାକେଟ' ଧ୍ୱଂସ କରିବାକୁ ବସିଛି । ବହୁଦିନ ପୂର୍ବେ ଖବରକାଗଜରୁ ଜାଣିବାକୁ ମିଳିଥିଲା ଶିମଳିପାଳରୁ ବହୁ ଟ୍ରକ ମୂଲ୍ୟବାନ କାଠ ବିହାର ଓ ବେଙ୍ଗଲକୁ ଚାଲାଣ ହେବା । ଆମ ଖବରକାଗଜମାନେ ଏତିକି ପ୍ରକାଶ କରିବାରେ ସନ୍ତୁଷ୍ଟ । ଏହାର ପରବର୍ତ୍ତୀ ପଦକ୍ଷେପ କ'ଣ ହେଲା ନା ଖବରକାଗଜ ନା ଖୋଦ ସରକାର ପ୍ରକାଶ କରିବାକୁ ପ୍ରସ୍ତୁତ । ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ପ୍ରତ୍ୟେକ ନାଗରିକର ଗଣତାନ୍ତ୍ରିକ ଅଧିକାର ଅଛି ରାଷ୍ଟ୍ର ସମ୍ବନ୍ଧୀୟ ସମସ୍ତ ବିଷୟ ଜାଣିବା ପାଇଁ । ଏହା କ'ଣ ଓଡ଼ିଶା ତଥା ଭାରତବର୍ଷରେ ସମ୍ଭବ ? ଅବଶ୍ୟ ଦେଶର କେତେକ ଅତି ଗୁରୁତ୍ୱପୂର୍ଣ୍ଣ ନିରାପତା ପରି ତଥ୍ୟ ପ୍ରକାଶ କରାଯାଇ ନପାରେ; କିନ୍ତୁ ଶିମିଳିପାଳ ଲୁଣ୍ଠନ' ସମ୍ବାଦ ଦେଶ ସୁରକ୍ଷା ସମ୍ବନ୍ଧୀୟ ତଥ୍ୟ ପରି ଏତେ ଗୁରୁତ୍ୱପୂର୍ଣ୍ଣ ଗୁପ୍ତ ସମ୍ବାଦ ନୁହେଁ ତ । ଯଦି ଏଥିରେ ଅତି ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିବିଶେଷ ସଂଶ୍ଳିଷ୍ଟ ସେକଥା ଅଲଗା ।

ଶିମିଳିପାଳ କାହିଁକି ଓଡ଼ିଶାର ପ୍ରାୟ ଅନେକ ଜଙ୍ଗଲ (ଟେରିଟୋରିଆଲ୍) ଟିମ୍ବର ଡିଭିଜନକୁ ଏହି ବ୍ୟାଧି ଘୋଟିଛି । ରେକର୍ଡ଼ ହୋଲଡ଼ିଂ ବା ଟିକସଭୁକ୍ତ ପ୍ରଜା ଜମିରୁ କାଠ ବ୍ୟବସାୟୀମାନେ ଶହ ଶହ ଗଛ କାଟି ଏଥିସହିତ ସରକାରୀ ଜଙ୍ଗଲରୁ ଗଛ ଚାଲାଣ ହେଉଥିବା ସମ୍ବାଦ ଆଜି ନୂଆ ନୁହେଁ । ଜଙ୍ଗଲ ସବୁ ସମୟରେ ସଙ୍କୁଚିତ ଓ ବୃକ୍ଷ ଶୂନ୍ୟ ହେବାରେ ଲାଗିଛି । ମଝିରେ ମଝିରେ ଏହି ସମ୍ବାଦ ବରାବର ଦେଖିବାକୁ ମିଳୁଛି । ଏହା କ'ଣ କାହାର ପୈତୃକ ସମ୍ପତ୍ତି । ଏହା ସବୁ ତ ଖୋଦ ଆମ ଗଣତାନ୍ତ୍ରିକ ଅର୍ଥାତ ଲୋକତାନ୍ତ୍ରିକ ସରକାରଙ୍କ ସମ୍ପତ୍ତି । ଏଥିରେ ଆପତ୍ତି କରିବାର କ'ଣ ଅଛି । ଲୋକପ୍ରିୟତା ଆମର କାମ୍ୟ ।

ଏଠାରେ ଶିମିଳିପାଳ ବିଷୟରେ କହିବାର ଉଦ୍ଦେଶ୍ୟ ହେଲା, ମୟୂରଭଞ୍ଜ, କେନ୍ଦୁଝର ଏବଂ ବାଲେଶ୍ୱର ଏହି ତିନି ଜିଲ୍ଲାର ଜଳବାୟୁ ଓ ପରିବେଶକୁ ଶିମିଳିପାଳ ଜଙ୍ଗଲ ଏବଂ କେନ୍ଦୁଝର-ମୟୂରଭଞ୍ଜ ଏବଂ ବାଲେଶ୍ୱର ଜିଲ୍ଲାର ବିସ୍ତୃତ ଅରଣ୍ୟ ନିୟନ୍ତ୍ରଣ କରେ । ଏହି ଶିମିଳିପାଳ ଜୈବମଣ୍ଡଳ ୨୦ ଡିଗ୍ରି- ୧୭ ମିନିଟ୍ ଏବଂ ୨୨ ଡିଗ୍ରୀ-୩୪ ମିନିଟ ଉତ୍ତର ମଧ୍ୟ ଅକ୍ଷାଂଶ ଏବଂ ୮୫ ଡିଗ୍ରି-୪୦ ମିନିଟ୍ ଏବଂ ୮୭ ଡିଗ୍ରୀ-୧୫ ମିନିଟ୍ ପୂର୍ବ ମଧ୍ୟ ଦ୍ରାଘିମା ଓ ମୟୂରଭଞ୍ଜ ଜିଲ୍ଲାର ମଧ୍ୟସ୍ଥଳରେ ଅବସ୍ଥିତ । ଏହାର ସ୍ୱତନ୍ତ୍ରତା ପୂର୍ଣ୍ଣ ପୃଷ୍ଠଭୂମି (Physiography) ପ୍ରକୃତିର କ୍ରାନ୍ତିୟ କୃତି ଶିଳ୍ପ ମଧ୍ୟରୁ ଏକ

ଦୁର୍ଲଭ ଜୀବ ଭୌଗୋଳିକ ସମାବେଶ ବା ପ୍ରକୃତିର ଏକ ଅଭିନବ ପରିକଳ୍ପନା । ଅନେକ ଗୁଡ଼ିଏ ସମଷ୍ଟିଗତ ପାହାଡ଼ ଅଣ୍ଡାକୃତି ଶରୀରରେ ୩୦୦୦ରୁ ଊର୍ଦ୍ଧ୍ୱ ବର୍ଗ କିଲୋମିଟର ବ୍ୟାପକ ଅଞ୍ଚଳ ଅଧିକାର କରିଥିବାବେଳେ ପ୍ରତ୍ୟେକର ଉଚ୍ଚତା ସମୁଦ୍ର ପତନଠାରୁ ୩୦୦ ମିଟରରୁ ୧୩୦୦ ମିଟର ବ୍ୟବଧାନ ରକ୍ଷା କରେ । ଏହି ବିସ୍ତୀର୍ଣ୍ଣ ଭୂଖଣ୍ଡରୁ ସଂଗୃହୀତ ଜଳ ଦକ୍ଷିଣରେ ବୈତରଣୀ, ଉତ୍ତରରେ ସୁବର୍ଣ୍ଣରେଖା ନଦୀକୁ ପ୍ରାଣ ଦେଉଥିବାବେଳେ ଏହି ଦୁର୍ଲଭ ଜୈବମଣ୍ଡଳରୁ ଉତ୍ପତ୍ତି ବୁଢ଼ାବଳଙ୍ଗ ନଦୀକୁ ଜୀବନ୍ତ ରଖିବା ସହିତ ବାଲେଶ୍ୱର ଜିଲ୍ଲାର ବଳରାମଗଡ଼ି (ଚାନ୍ଦିପୁର) ଠାରେ ସୃଷ୍ଟି କରେ ଅନ୍ୟ ଏକ ଦୁର୍ଲଭ ଲୁଣା ଜୁଆର ଅନବଦ୍ୟ କ୍ରାନ୍ତୀୟ ଜୈବମଣ୍ଡଳ, ଯାହା ଆଧୁନିକ ସଭ୍ୟତା ଓ ବିକାଶଶୀଳ ଶିଳ୍ପ କଳ୍ପନା ବାହାରେ । ଏହି ଈଶ୍ୱରୀୟ ଐଶ୍ୱର୍ଯ୍ୟପୂର୍ଣ୍ଣ ଜୀବମଣ୍ଡଳ ଏବେ ଲୁଣ୍ଠିତ । ଜଙ୍ଗଲକୁ ଯେ ପ୍ରାଣ ଭାବେ ନପାଇଛି, ସେ ଜଙ୍ଗଲର ତାତ୍ପର୍ଯ୍ୟ ବୁଝିପାରିବ ନାହିଁ କି ଜୀବମଣ୍ଡଳର ଅର୍ଥ ବୁଝିବାକୁ ସକ୍ଷମ ହେବ ନାହିଁ । ଜଣେ ଜୈବମଣ୍ଡଳର ଅଭିଧାନ ସମ୍ମତ ଜ୍ଞାନ କିମ୍ବା ବୈଜ୍ଞାନିକ ସମ୍ମତ ଜ୍ଞାନ ଅର୍ଜନ କରିବାରେ ସକ୍ଷମ ହୋଇପାରେ; କିନ୍ତୁ ପ୍ରାଣତାତ୍ତ୍ୱିକ ଜ୍ଞାନ ପାଇଁ ସେହି ଜୀବମଣ୍ଡଳର କୋଟି କୋଟି ପ୍ରାଣ ସହିତ ନିଜ ପ୍ରାଣକୁ ଏକାଭୀଭୂତ କରିବାକୁ ହେବ । ଏଣୁ ଏବର କୌଣସି ଜୈବମଣ୍ଡଳ ଏହି ପ୍ରଚଳିତ ପୀଢ଼ି ହାତରେ ସୁରକ୍ଷିତ କିମ୍ବା ନିରାପଦ ନୁହେଁ । ଆସନ୍ତା ପୀଢ଼ିପକ୍ଷେ ପ୍ରାକୃତିକ ଜଙ୍ଗଲ ଦେଖିବା ସ୍ୱପ୍ନ ହୋଇଯିବ । ଏଣୁ ଯୁବସମାଜ ଏହାର ପ୍ରତିରୋଧ ନକଲେ ସେମାନଙ୍କ ଲିଭି ଆସୁଥିବା ଭାଗ୍ୟରେଖା କପାଳରେ ହାତ ଦେବା ପରି ସମସ୍ୟା ସୃଷ୍ଟି କରିବ । ଶିମିଳିପାଳ ହୃଦୟରୁ ପ୍ରାଣବାହୀ ବୁଢ଼ାବଳଙ୍ଗ, ଖଡ଼କାଇ, ଖଇରା , ସାଳନ୍ଦୀ, ପୂର୍ବଦେଓ, ପଶ୍ଚିମଦେଓ, ଭଣ୍ଡନ, ସାଞ୍ଜୋ ଏବଂ ପଳପଳା ନଦୀମାନେ ମୟୂରଭଞ୍ଜ, କେନ୍ଦୁଝର ଏବଂ ବାଲେଶ୍ୱର ଜିଲ୍ଲାମାନଙ୍କର ଧମନୀ ରୂପେ କାର୍ଯ୍ୟ କରୁଥିବାବେଳେ ଶିମିଳିପାଳକୁ ନିରବଛିନ୍ନ ଧର୍ଷଣ, ଏହି ତିନିଜିଲ୍ଲାର ଯୁବଗୋଷ୍ଠୀ ଉପରେ କୌଣସି ପ୍ରଭାବ ପକାଉଥିବା ଦେଖିବାକୁ ମିଳୁନାହିଁ । ଶିମିଳିପାଳ ଜଙ୍ଗଲ ବାଲେଶ୍ୱର ଜିଲ୍ଲାର ସମୁଦ୍ର ତୀର ବଙ୍ଗୋପସାଗରଠାରୁ ମାତ୍ର ୫୦ ରୁ ୫୫ କିଲୋମିଟର ବ୍ୟବଧାନରେ ଅବସ୍ଥିତ । ଏଣୁ ଏହି ବିସ୍ତୃତ ଜଙ୍ଗଲ ଧ୍ୱଂସ ପାଇଗଲେ ଏହି ତିନି ଜିଲ୍ଲାକୁ ବିଶେଷଭାବେ କ୍ଷତି ଘଟାଇବ । କାରଣ ଏହା ପ୍ରକୃତିର ସାମୁଦ୍ରିକ ଦୁର୍ବିପାକ ବିରୋଧୀ ବ୍ୟବସ୍ଥା ବା Anti-Disaster Planning ରୂପେ କାର୍ଯ୍ୟ କରିବା ସହିତ ଏହି ତିନିଜିଲ୍ଲାର ଅର୍ଥନୀତି ଏବଂ ସାମାଜିକ କଲ୍ୟାଣକୁ ବହୁ ଭାବରେ ପ୍ରଭାବିତ କରିଥାଏ, ଯାହାକୁ କି ଧପ୍‌ପାବାଜ ସରକାରୀ କର୍ମଚାରୀ, କାଠ ବ୍ୟବସାୟୀ ଏବଂ

ରାଜନେତା ବୁଝିବାକୁ ସକ୍ଷମ ହେବେ ନାହିଁ । ଯେଉଁଦିନଠାରୁ ବିଶ୍ୱ ବିଖ୍ୟାତ ଶିମିଳିପାଳ ଜୀବମଣ୍ଡଳ ଲୁଣ୍ଠନର ଶିକାର ହେଲା ସେହିଦିନ ଜନ୍ମ ନେଲା 'ଶିମିଳିପାଳ ବିକାଶ ଉନ୍ନୟନ ନିଗମ' (Similipal Development Corporation) । ତାହା ଥିଲା ଦୁର୍ଭାଗ୍ୟର ବର୍ଷ ୧୯୭୯ । ସେତେବେଳେ ପ୍ରଦେଶର ଜଙ୍ଗଲ ଥିଲା ୨୭,୪୦୦ ବର୍ଗ କିଲୋମିଟର ; କିନ୍ତୁ ଶିମିଳିପାଳ ଓ ତାହାର ପାଖାପାଖି ଜଙ୍ଗଲ ମିଶି ଥିଲା ୩,୫୦୦ ବର୍ଗ କିଲୋମିଟର । କେବଳ ମୟୂରଭଞ୍ଜ ଜିଲ୍ଲାରେ ସେତେବେଳେ ଥିଲା ସମୁଦାୟ ପ୍ରଦେଶର ୧/୩ ଅଂଶ ଗୁରୁତ୍ୱପୂର୍ଣ୍ଣ ଜଙ୍ଗଲ ; କିନ୍ତୁ ଶିମିଳିପାଳକୁ ଲାଗି ଅନ୍ୟ ସବୁ ଜଙ୍ଗଲ ବ୍ଲକ ୫୦୦ ବର୍ଗକି.ମି. ରହିଥିଲା । ଏହି ଉନ୍ନୟନର ଉଦ୍ଦେଶ୍ୟ ଥିଲା ମହତ; କିନ୍ତୁ ଉନ୍ନୟନ ନାମରେ ପ୍ରକୃତିର ବିଷୁବ ମଣ୍ଡଳୀୟ ଜୈବ ଉଦ୍ୟାନ ହେଲା ଲୁଣ୍ଠିତ, ହେଲା ଧର୍ଷିତା, ହେଲା କ୍ଷତବିକ୍ଷତ । ବାଲେଶ୍ୱର, ମୟୂରଭଞ୍ଜ ଏବଂ କେନ୍ଦୁଝର ଜିଲ୍ଲାର ଭାଗ୍ୟରେଖ ହେଲା କ୍ଷତବିକ୍ଷତ । ବନ ବିଜ୍ଞାନକୁ ବିଦ୍ରୂପ କରି, ଆଇନକୁ ବେଆଇନ କରି , ବେଆଇନକୁ ଆଇନ କରି ଚାଲିଲା ଲୁଣ୍ଠନ ଶିମିଳିପାଳ ଉପରେ ଲାଭଖୋର, ନ୍ୟସ୍ତସ୍ୱାର୍ଥ କର୍ମଚାରୀ, ବ୍ୟବସାୟୀ ଗୋଷ୍ଠୀ ଏବଂ ଆମ ରୁଗ୍ଣ ଗଣତନ୍ତ୍ରର ପୁରୋଧାମାନଙ୍କ ଇଙ୍ଗିତରେ । ଏହି ବ୍ୟାଧି କ୍ରମେ ବଢ଼ିଚାଲିଲା ମୟୂରଭଞ୍ଜ, କେନ୍ଦୁଝର ଏବଂ ବାଲେଶ୍ୱର ଜିଲ୍ଲାର ସମୁଦାୟ ଜଙ୍ଗଲକୁ । ଏହି ଜିଲ୍ଲାମାନଙ୍କର ଭାଗ୍ୟରେଖାରେ ଲାଗିଲା ଘୁଣ ସମସ୍ତଙ୍କ ଜ୍ଞାତସାରରେ । ଶିମିଳିପାଳ ବିକାଶ ନାମରେ କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ବିଶେଷ ଓ ଖୋଦ୍ ଜଙ୍ଗଲ ମହକୁମାର କଳେବରରେ ବିକାଶ ଘଟିଲା ସିନା ଶିମିଳିପାଳ ଓ ତାହାର ଆଖପାଖ ଜଙ୍ଗଲ ହେବାକୁ ଲାଗିଲା ରୁଗ୍ଣରୁ ରୁଗ୍ଣତର । ସେହିଦିନଠାରୁ ଅମଲନାମା ଅଥବା ଟିକଟଲାଣ୍ଡ ବା ପ୍ରଜାସ୍ୱତ୍ୱ (Record Holding) କାଠ 'କର୍କଟରୋଗ' ଶିମିଳିପାଳ ଶରୀରକୁ କରିବାକୁ ଲାଗିଲା ଜୀର୍ଣ୍ଣ ଏବଂ ସଂକୁଚିତ । ପ୍ରଜା ସ୍ୱତ୍ୱ କାଠ କହିବା ଅର୍ଥ ପ୍ରଜାମାନଙ୍କ ସ୍ୱତ୍ୱାଧିକାର ଜମିରେ ବା ରେକର୍ଡ଼ଭୁକ୍ତ ଜମିରେ ଥିବା କାଠଗଛକୁ ବୁଝାଏ । ଏହି ସ୍କାମ୍‌ର ଏକ ବାହୁ ଜଙ୍ଗଲ ମହକୁମାର ନ୍ୟସ୍ତ ସ୍ୱାର୍ଥ କର୍ମଚାରୀ ଥିବାବେଳେ, ଅନ୍ୟ ଏକ ବାହୁ ସ୍ଥାନୀୟ ରାଜସ୍ୱ ବିଭାଗର ନ୍ୟସ୍ତ-ସ୍ୱାର୍ଥ କର୍ମଚାରୀ, କିନ୍ତୁ ଜମି ମାଲିକ କେବଳ ଲାଞ୍ଜ ମାତ୍ର । ଯାହା ମାଧ୍ୟମରେ କର୍କଟ କୀଟ କାଠ ବ୍ୟବସାୟୀ ସୁନ୍ଦର ଭାବେ ଜଙ୍ଗଲ ଜମିକୁ ଅଜଙ୍ଗଲ ଜମି ବନାମ ପ୍ରଜାସ୍ୱତ୍ୱ କରି ଆଇନର ଉଛୁଳା ନଦୀକୁ ଅକ୍ଳେଶରେ ପାରି ହୋଇ କାଠ ବଜାରରେ ପହଞ୍ଚି ଉତ୍‌ଫୁଲ୍ଲିତ କଣ୍ଠରେ କହିବ ବିଶ୍ୱରେ ଆମ୍ଭ ଜଙ୍ଗଲ ଆଇନ ସବୁଠାରୁ ଉତ୍କୃଷ୍ଟ ଏବଂ ଶକ୍ତିଶାଳୀ । ସାବଧାନ ! ଯୁବ ସମାଜ, ତୁମ୍ଭଙ୍କୁ ଏହି କାଠ ରାକେଟ

ଜଙ୍ଗଲ ନିଃସ୍ୱ କରିଦେବ । ତୁମ୍ଭେ ଅମଲାତନ୍ତ୍ର, ରାଜନେତା ଏବଂ କାଠ ବ୍ୟବସାୟୀଙ୍କ ଚକ୍ରବ୍ୟୂହ ଭେଦ କରିପାରିବେ ତ ? ଏହି ବ୍ୟାଧି ମୟୂରଭଞ୍ଜ ଜିଲ୍ଲାର ଜଙ୍ଗଲମାନଙ୍କରେ ସୀମିତ ନରହି କେଉଁଝର ଜିଲ୍ଲାର ଜଙ୍ଗଲମାନଙ୍କୁ ମଧ ବ୍ୟାପିବାକୁ ଲାଗିଲା ଏବଂ ପୂର୍ଣ୍ଣମାତ୍ରାରେ ସଂକ୍ରମିତ କରିଛି ମଧ ଅଦ୍ୟାବଧି । ମୋର ଶିମିଳିପାଳ ଚାକିରି ମଧରେ ମୁଁ ସମ୍ମୁଖୀନ ହୋଇଥିଲି ଏହିପରି ଏକ କାଠବ୍ୟବସାୟୀ, ଅମଲାତନ୍ତ୍ର ଏବଂ ରାଜନେତାମାନଙ୍କର ଚକ୍ରବ୍ୟୂହ ୧୯୮୩ ସାଲରେ । ସେହି ସମୟରେ ମୋର ଗୁପ୍ତ ଚରିତ୍ର ପଞ୍ଜି ହୋଇଥିଲା ଅଶିଷ୍ଟ । ମୁଁ କୁଆଡ଼େ ଥିଲି ସରକାରୀ ଭାଷାରେ ଜଣେ ଅବାଧ, ଅଶିଷ୍ଟ ସରକାରୀ ଚାକର । ତାହାରି ଫଳରେ ମୁଁ ହୋଇଥିଲି କୋର୍ଟର ଦ୍ୱାରସ୍ଥ । ମୋର ଚରିତ୍ର ପଞ୍ଜିରୁ କଳାଛାପ ଉଠିଗଲା ସତ; କିନ୍ତୁ ଫଳ କ'ଣ ହେଲା । ଫଳ ହେଲା କରଞ୍ଜିଆ (ମୟୂରଭଞ୍ଜ) ଜଙ୍ଗଲରୁ ବହୁ ଟ୍ରକ ମୂଲ୍ୟବାନ ଶାଳ ଓ ଅନ୍ୟାନ୍ୟ ଗଛ କଟାଯାଇ ଓଡ଼ିଶା ବାହାରକୁ ଚାଲାଣ ହେଲା । ମୁଁ ସରକାରୀ ରେକର୍ଡ଼ରେ ରହିଗଲି ଏକ ଡ୍ୟାସ୍-ହାଉଣ୍ଡ ଅର୍ଥାତ ଏକ ବୋବାଳି ଛଡ଼ା କୁତା ହୋଇ । ଠିକ ସେହିପରି ତୁମ୍ଭେ ଯୁବ ସମାଜକୁ ସରକାରୀ କାଗଜ କଲମରେ ଭକୁଆ ବନେଇ ତୁମ୍ଭ ଶିମିଳିପାଳକୁ କରିଦେବେ ଗୁଡ଼ିଏ ମଲା ପାହାଡ଼ମାନଙ୍କର ଅସୁରଶାଳା, ଯେଉଁଠି ଚାଲିବ ମୃତ୍ତିକା ସଂରକ୍ଷଣ କାର୍ଯ୍ୟ ଓ ଆକାଶିଆ ଏବଂ ୟୁକାଲିପଟାସ ବୃକ୍ଷରୋପଣ ।

ବିଗତ ଶତାବ୍ଦୀର ଶେଷ ଭାଗରେ ଘଟିଥିଲା ପ୍ରଥମ ଜନ-ଜୀବ ସଂହାରକ ଘୂର୍ଣ୍ଣିବାତ୍ୟା ୧୯୭୧ ମସିହାରେ କେନ୍ଦୁଝର ଜିଲ୍ଲାରେ ଏବଂ ଅନ୍ୟଟି ଘଟିଥିଲା ୧୯୭୯ ସାଲ କେନ୍ଦୁଝର- ମୟୂରଭଞ୍ଜ ସୀମା ଅଞ୍ଚଳରେ । ଏହି ଜିଲ୍ଲାମାନଙ୍କର ଭାଗ୍ୟରେଖା ସାଙ୍ଗକୁ ଆୟୁରେଖା ସଢ଼ିବାକୁ ଲାଗିଲା ଯେଉଁ ଦିନଠାରୁ ଜଙ୍ଗଲ ପରିସୀମା କମିବା ସହିତ ଜଙ୍ଗଲର ଘନତା (Density) ଦ୍ରୁତଗତିରେ କମିବାରେ ଲାଗିଲା । ଏହି ଦୁଇଟି ବାତ୍ୟା ମଧରୁ ପ୍ରଥମଟି ଘଟିବା ସମୟରେ ମୁଁ କେଉଁଝରରେ ଅବସ୍ଥାପିତ ନଥିଲେ ମଧ ବାତ୍ୟାପରେ ମୋର ବନ୍ଧୁମାନଙ୍କ ଅବସ୍ଥା ଦେଖିବାକୁ ଯାଇଥିଲି । କିନ୍ତୁ ଦ୍ୱିତୀୟଟି ଘଟିବା ବେଳକୁ ମୁଁ ଥିଲି ମୁଖ୍ୟ ଉପଦେଷ୍ଟା କେନ୍ଦୁଝର ଜିଲ୍ଲାର ଚମ୍ପୁଆ ବନପାଳ ତାଲିମ ଅନୁଷ୍ଠାନର । ବାତ୍ୟା ପରେ ସେ ସମୟର ଜିଲ୍ଲା କଲେକ୍ଟର ଫଣୀଭୂଷଣ ଦାସ ଜିଲ୍ଲାସ୍ତରରେ 'ବାତ୍ୟାର କାରଣ କ'ଣ ହୋଇପାରେ' ଶୀର୍ଷକ ଏକ ଖୋଲାମଞ୍ଚ ବିତର୍କ ଆହୂତ କରିଥିଲେ । ଜଙ୍ଗଲ ବିଭାଗ ପକ୍ଷରୁ ମୋତେ ସୁଯୋଗ ମିଳିଥିଲା ଏହି ମଞ୍ଚରେ ଏ ସମ୍ବନ୍ଧୀୟ କିଛି କହିବା ପାଇଁ । ମୋର ବକ୍ତୃତା ଥିଲା– କେନ୍ଦୁଝର, ମୟୂରଭଞ୍ଜ ଓ ବାଲେଶ୍ୱରବାସୀଙ୍କ ପାଇଁ ଏହି ଦୁର୍ଯୋଗ ଅଯମାରମ୍ଭ

ମାତ୍ର । ଆହୁରି ଦୁର୍ଦ୍ଦିନର ଘନବାଦଲ ଘନୀଭୂତ ହେବାରେ ଲାଗିଛି । ଯଦି ଏହି ତିନିଜିଲ୍ଲାର ଅଧିବାସୀ ସେମାନଙ୍କ ଭାଗ୍ୟରେଖାକୁ ସଞ୍ଜୀବିତ କରିବାକୁ ଅକ୍ଷମ, ତା'ହେଲେ ଦୁର୍ଦ୍ଦଶା ଭୋଗିବ କିଏ ? ଏହାର କାରଣ ହେଲା :

ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲା ସମ୍ପୂର୍ଣ୍ଣ ଲୁହାପଥର ଓ ଅନ୍ୟ ଧାତବ ଖଣିଜ ପରିପୂର୍ଣ୍ଣ ଅଞ୍ଚଳ । କେବଳ ଏହି ଦୁଇ ଜିଲ୍ଲା କାହିଁକି ଏହି ଧାତବ ପରିପୂର୍ଣ୍ଣ ଅଞ୍ଚଳ ଓଡ଼ିଶାର ଏହି ଦୁଇ ଜିଲ୍ଲାରୁ ଆରମ୍ଭ ହୋଇ ବିହାରର ସମ୍ପୂର୍ଣ୍ଣ ସିଂହଭୂମ ଜିଲ୍ଲାକୁ ବିସ୍ତାରିତ ହୋଇଛି । ଏହି ବିସ୍ତୀର୍ଣ୍ଣ ଅଞ୍ଚଳରେ ଘନ ଶାଳ ଜଙ୍ଗଲ ଏବଂ ଶାଳର ବନ୍ଧୁ ଅନ୍ୟଶ୍ରେଣୀର ମହାଦ୍ରୁମ ଠାରୁ ଆରମ୍ଭ କରି ବିଭିନ୍ନ କିସମର ଉଦ୍ଭିଦମାନଙ୍କୁ ଦେଖିବାକୁ ମିଳୁଥିଲା । ଯେଉଁ ସମୟରେ ମୁଁ ଜଙ୍ଗଲ ମହକୁମାରେ ୧୯୫୯-୬୦ ପ୍ରବେଶ କରିବାର ସୌଭାଗ୍ୟ ଲାଭ କରିଥିଲି । ତା'ପରେ ବହୁବାର ସୁଯୋଗ ପାଇଥିଲି ଉପଦେଷ୍ଟା ଭାବେ ଫରେଷ୍ଟର ଓ ରେଞ୍ଜର ପ୍ରଶିକ୍ଷାର୍ଥୀମାନଙ୍କୁ ଏହି ଦୁଇ ପ୍ରଦେଶର ବନ ବିଜ୍ଞାନ-ବାସ୍ତବ ଶିକ୍ଷା (Practical Training) ଦେବାପାଇଁ ଯିବାକୁ ସେହି ଅଞ୍ଚଳକୁ । ସେତେବେଳେ ଆମ ପ୍ରଦେଶରେ ୪୭ ଶତାଂଶ ଭୂଭାଗ ଘନ ଅରଣ୍ୟରେ ପରିପୂର୍ଣ୍ଣ ଥିଲା ଏବଂ ପ୍ରଦେଶ କାହିଁକି ଦେଶରେ ସର୍ବଭାରତୀୟ ଜଙ୍ଗଲ ସେବା (Indian Forest Service) ଚାକିରି ସୃଷ୍ଟି କରାଯାଇ ନଥିଲା । ଛୋଟଠାରୁ ବଡ଼ ପର୍ଯ୍ୟନ୍ତ ସବୁ ଥିଲା ପ୍ରାଦେଶିକ ଚାକିରି । ସେମାନେ ଅରଣ୍ୟକୁ ପ୍ରାଣ ଭାବେ ପାଇଥିଲେ । ସେମାନଙ୍କର ପରିଚୟ ନଥିଲା ମଟର ସାଇକେଲ, କିମ୍ବା ଚାରିଚକିଆ ଯାନ ସହିତ । କିନ୍ତୁ ପରିଚୟ ଥିଲା ସେମାନେ ଏକାଭିଭୂତ ହୋଇଥିବା ଜୀବମଣ୍ଡଳର ପ୍ରତ୍ୟେକ ଜୀବଙ୍କ ସହିତ କେବଳ ସେତେବେଳେ ଡି.ଏଫ.ଓ. (D.F.O.) ଓ ଉପର ସ୍ତରରେ ଥିବା ହାକିମମାନେ ଚଢୁଥିଲେ ଜିପ୍ । ସାରା ଦେଶର ଲୌହ ପ୍ରସ୍ତରଠାରୁ ଆରମ୍ଭ କରି ଏହି ଅଞ୍ଚଳରେ ମିଳୁଥିବା ଅନ୍ୟ ଧାତବ ଖଣିଜ ଦ୍ରବ୍ୟର ଚାହିଦା ପୂରଣ କରିବାକୁ ଯାଇ ଏହି ଅଞ୍ଚଳରୁ ଜଙ୍ଗଲ ନଷ୍ଟ ହେବାକୁ ଲାଗିଲା ଓ ଜଙ୍ଗଲ ସ୍ଥାନରେ ଗୁଡ଼ାଏ ଗର୍ତ୍ତ ଓପୋଖରୀ ସୃଷ୍ଟି ହେବାକୁ ସୁଯୋଗ ମିଳିଲା । ଏକ ବୃହତ୍ ସ୍ଥଳଭାଗର ଅରଣ୍ୟ, ବନ୍ୟପ୍ରାଣୀ ଏବଂ ପରିବେଶକୁ ଉପେକ୍ଷା କରି ଶିଳ୍ପପତିମାନଙ୍କ ସ୍ୱାର୍ଥକୁ ପ୍ରାଧାନ୍ୟ ଦେଇ ଧାତବ ଖଣି ପରେ ଖଣି ବିନା ଯୋଜନାରେ ସାରା ଜଙ୍ଗଲ ମଧ୍ୟରେ ସରକାରଙ୍କ ସ୍ୱୀକୃତି ମିଳିଲା ଓ ଖୋଦନ କାର୍ଯ୍ୟ ଚାଲୁ ରହିଲା । ଏବେ ମଧ୍ୟ ଏହି ଅବସ୍ଥା ନିରବଚ୍ଛିନ୍ନ ଭାବେ ଭାରତ ସରକାରଙ୍କ ସ୍ୱୀକୃତି ବିନା ଚାଲୁ ରହିବାର ଦୃଷ୍ଟାନ୍ତର ଅଭାବ ହେବ ନାହିଁ । ଯଦି ଏହିସବୁ ଖାଦାନ ସେହିସ୍ଥାନର ଭୂବୃତ୍ତାନ୍ତ ନକ୍ସା ବା ଟପୋସିଟ୍ (Tope-Map) ଉପରେ ପ୍ରଦର୍ଶିତ

କରାଯାଏ ଓ ଲୋକଲୋଚନକୁ ଅଣାଯାଏ, ତେବେ ସରକାରଙ୍କ ଜନ ଏବଂ ବନ୍ୟପ୍ରାଣୀବତ୍ସଳତା ଓ ବୈଜ୍ଞାନିକ ଚିନ୍ତାଧାରା ସହଜରେ ଲୋକମାନେ ଉପଲବ୍ଧି କରିପାରିବେ । ଏହାଛଡ଼ା ଖଣିମାଲିକମାନଙ୍କୁ ସରକାରୀ ଭାବେ ଦିଆଯାଇଥିବା ଭୂ-ଅଞ୍ଚଳ ଖୋଦନ ଅଧିକାର ବା Surface Right ଏବଂ ସେମାନେ ପ୍ରକୃତରେ ବାସ୍ତବ କ୍ଷେତ୍ରରେ ଅଧିକାର କରିଥିବା ଅଞ୍ଚଳ ତାହା ପ୍ରଜାବତ୍ସଳ-ସରକାର ଓ ନିଷ୍ଠାନାୟକ ଖଣି ମାଲିକମାନଙ୍କ ବ୍ୟତୀତ ଅନ୍ୟ କେହି ଜାଣିବାର ଉପାୟ ମଧ୍ୟ ନାହିଁ । ଠିକ୍ ସେହିପରି ପ୍ରତ୍ୟେକ ରିଜର୍ଭ ଜଙ୍ଗଲର ସୀମାରେଖା (Boundary Line) ପୂର୍ବରୁ କେଉଁଠି ଥିଲା ଏବଂ ଏବେ କେଉଁଠି ଅଛି ଓ କେତେ 'ରେକର୍ଡ଼ ହୋଲଡ଼ିଂ କର୍କଟ କୀଟ ଦଂଷ୍ଟା' ତାହା ଲୋକ ଜାଣିବାର ଉପାୟ କ'ଣ ? ଯଦି ଜମିଦାରୀ ଉଚ୍ଛେଦ ସମୟର ଟପୋ-ମ୍ୟାପ ଉପରେ ଏବର ଟପୋ ମ୍ୟାପକୁ ମିଳାଯାଏ, ତା'ହେଲେ ଆମ ଜଙ୍ଗଲ ମହକୁମାରେ ଜନ ସେବାର ନିଷ୍ଠା କେତେଦୂର ତାହା ସହଜରେ ଲୋକ ତଥା ଖୋଦ ସରକାର ଜାଣିବାକୁ ସକ୍ଷମ ହେବେ । ଏଣୁ ଆମ ଜନତାନ୍ତ୍ରିକ ବନାମ ଅମଲାତାନ୍ତ୍ରିକ ସରକାର ଆମ ସେବାରେ କେତେଦୂର ସ୍ୱଚ୍ଛ ଏବଂ ନିଷ୍ଠ, ତାହା ବିଶ୍ଳେଷଣାତ୍ମକ ହୋଇ ରହିବ ନାହିଁ ।

ଲୌହ ଖଣିଜ ମିଶ୍ରିତ ମୃତ୍ତିକାରେ ପ୍ରଥମ ଶ୍ରେଣୀର ଉତ୍ତମ ଶାଳଜଙ୍ଗଲ ଦେଖିବାକୁ ମିଳେ । ଶାଳବଣ ଲୌହ ଧାତବ ମୃତ୍ତିକାରେ ପ୍ରକୃତିକୃତ ଜୈବମଣ୍ଡଳର ଏକ ଅଂଶବିଶେଷ ମାତ୍ର । ଶାଳବଣର ପ୍ରକୃତି ସୃଷ୍ଟ ପରିବେଶ ମର୍ଯ୍ୟାଦା (Ecological Status) ଏକ ଭିନ୍ନଧରଣର ଓ ଉଚ୍ଚତର ମାନର । ଏହି ଜଙ୍ଗଲ ସୃଷ୍ଟି ହୁଏ ପ୍ରାକୃତିକ ଉପାୟରେ ଭିନ୍ନ ଭିନ୍ନ ଉଦ୍ଭିଦ ଏବଂ ଜୀବାଂଶ ପଚିସଢ଼ି ପ୍ରକୃତି ତିଆରି ଅମ୍ଳ ମୃତ୍ତିକା (Acidic Soil)ରେ । ଏହି ପ୍ରାକୃତିକ ପରିବେଶକୁ ନଷ୍ଟ କରିଦେଲେ ମା' ବା ବଡ଼ ବଡ଼ ଶାଳଗଛ ମୂଳରେ ଆମ୍ଭେମାନେ ବିଲକୁଲ ଚାରା ଶାଳଗଛ ଦେଖିବାକୁ ପାଇବା ନାହିଁ । ଆମେ ପଲିଥିନ ବ୍ୟାଗ୍‌ରେ ଶାଳ ମଞ୍ଜି ପୋତି ଶାଳ ଚାରା କିଛି ଉତାରି ଶାଳ ବଗିଚା ସୃଷ୍ଟି କରିପାରୁ ; କିନ୍ତୁ ଶାଳ ଜଙ୍ଗଲ ନୁହେଁ । ଜଙ୍ଗଲ ପ୍ରକୃତିର କୁଶଳୀ କାରିଗରମାନେ ତିଆରି କରୁଥିବାବେଳେ ମଣିଷ ବଗିଚା ତିଆରି କରେ । ଜଙ୍ଗଲର ବ୍ୟାଖ୍ୟା ଭିନ୍ନ କିସମର । ଏହା ପ୍ରାକୃତିକ, ଏହା ଜୀବନ୍ତ । ପ୍ରକୃତି ହିଁ ଜଙ୍ଗଲ, ଜଙ୍ଗଲ ହିଁ ପ୍ରକୃତି । ନର୍ସିଂହୋମ୍‌ରେ ମଣିଷ ଛୁଆ ପ୍ରସବ ଓ ସମୁଦ୍ର ତୀରରେ କିମ୍ବା ଶିମିଳିପାଳ ଜଙ୍ଗଲରେ ନୋଳିଆ କିମ୍ବା କୋହ୍ଲ ଛୁଆ ପ୍ରସବ ମଧ୍ୟରେ ତଫାତଯାହା ବଗିଚା ଶାଳ ଓ ପ୍ରକୃତିକୃତ ଶାଳ ଜଙ୍ଗଲ ମଧ୍ୟରେ ତଫାତ ସେଇଆ । ଗୋଟିଏ ମଣିଷ ଛୁଆ

ଆଭିଜାତ୍ୟର ପ୍ରତୀକ ହୋଇ ପଦାର୍ପଣ କରୁଥିବାବେଳେ ଅନ୍ୟ ଗୋଟିଏ ଶିଶୁ ପ୍ରକୃତିକୋଳକୁ ଓହ୍ଲାଇ ଆସେ ଦେବାଲୋକରୁ ସେଠାକାର ଜୈବମଣ୍ଡଳର ଅଂଶୀଦାର ହୋଇ, ପ୍ରକୃତିର ପ୍ରାଣ ନେଇ । ମୁଁ ମାଇନିଂ ଇଲାକା ଜଙ୍ଗଲାଞ୍ଚଳ ଦାୟିତ୍ୱରେ ଥିବା ସମୟରେ ମୋତେ ଅନେକ ବନ୍ଧୁ ପଚାରିଛନ୍ତି ଜଙ୍ଗଲ ଯାଉ ଗଛ ଲଗାଇ ନୂତନ ଜଙ୍ଗଲ ସୃଷ୍ଟି କରିପାରିବା, ଚିନ୍ତା କ'ଣ ? ମୁଁ ସେତେବେଳେ ସେମାନଙ୍କୁ ଠିକ୍ ଏହାହିଁ ଉତ୍ତର ଦିଏ ?

ଶାଳବଣ ବା 'ଶାଳ-ଜୈବମଣ୍ଡଳ' ଧାତବ ମୃତ୍ତିକା ଓ ରୌଦ୍ର ପ୍ରକୋପ ମଧ୍ୟରେ ସବୁସମୟରେ ବ୍ୟବଧାନ ରକ୍ଷା କରେ । ଯେଉଁ ଅଞ୍ଚଳରେ ସୂର୍ଯ୍ୟ ଶିଖା ଭୂମି ସ୍ପର୍ଶ କରିପାରୁ ନଥିଲା, ସେହିସବୁ ଅଞ୍ଚଳ ଜଙ୍ଗଲଶୂନ୍ୟ ହେବାକୁ ଲାଗିଲା ଓ ଖାତ ଓ ଗଡ଼ିଆରେ ପୂରିଗଲା । ସେଠାକାର 'ଜୈବମଣ୍ଡଳ'ର ଜୈବକୁ ଛାଡ଼ି ଦେଇ ଆଉସବୁ ଅଜୈବିକ ସମ୍ପତ୍ତି ଉପରେ ପ୍ରାଧାନ୍ୟ ଦିଆଯିବାଦ୍ୱାରା ଦ୍ରୁତଗତିରେ ଓଡ଼ିଶାରୁ ଗୋରୁମହିଷିଆଣୀ, ବାଦାମପାହାଡ଼, ସୁଲେଇପାଟ, ଯୋଡ଼ା, ବଡ଼ବିଲ, ନାଲଦା, ବୋଲାଣି, ସୁକିନ୍ଦା, ଟମକା, ଦୈତାରୀ ଇତ୍ୟାଦି ଇତ୍ୟାଦିକୁ ମିଶାଇ ବିହାରର ସିଂହଭୂମି ଜିଲ୍ଲାର ଗୋଆ, ଜାମଦା ଓ ସରଣ୍ଡା ଜଙ୍ଗଲର ବହୁ ବିସ୍ତୀର୍ଣ୍ଣ ଅଞ୍ଚଳ ଜଙ୍ଗଲଶୂନ୍ୟ ହେବାକୁ ଲାଗିଲା । ଶାଳ ଗଛର ବିଶେଷତ୍ୱ ହେଉଛି ଯେଉଁଠାରେ ପ୍ରାକୃତିକ ଉପାୟରେ ମୃତ୍ତିକାର ପ୍ରସ୍ତୁତି ଧାରାବାହିକ ଭାବେ ହୋଇ ଚାଲିଥିବ, ଶାଳ ଜଙ୍ଗଲର ସ୍ଥିତି ସେପର୍ଯ୍ୟନ୍ତ ସୁଦୃଢ଼ ଥିବ; କିନ୍ତୁ ଏହି ପ୍ରାକୃତିକ ପ୍ରକ୍ରିୟାର ବ୍ୟାଘାତ ଜନ୍ମିଲେ ଶାଳ ଓ ତାହାର ବନ୍ଧୁ ବୃକ୍ଷମାନେ ଆଉ ଦେଖିବାକୁ ମିଳିବେ ନାହିଁ । ତାହାହିଁ ହେଲା ଏହି ବିସ୍ତୀର୍ଣ୍ଣ ଅଞ୍ଚଳର ଦୁର୍ଦ୍ଦିନକୁ ଆମନ୍ତ୍ରିତ କରାଗଲା ବହୁ ଭାବରେ ଧାତବ ଖଣିଜ ବିନା ପରିକଳ୍ପନା ଓ ବିନା ଯୋଜନାବଦ୍ଧ ଉପାୟରେ ଆମଦାନି କରାଯିବା ଦ୍ୱାରା । ଏବେ ମଧ୍ୟ ଏହି ନୀତି ଭ୍ରଷ୍ଟ କାର୍ଯ୍ୟ ସ୍ଥାନୀୟ ପ୍ରାଣୀ ଜଗତକୁ ଅସ୍ତବ୍ୟସ୍ତ କରି ନିର୍ଯାତନା ଦେଉଥିବା ସମ୍ବାଦ ମଝିରେ ମଝିରେ ଶୁଣିବାକୁ ମିଳୁଛି । ବଡ଼ ବଡ଼ ଖଣି ମାଲିକମାନେ ବହୁ ଖାଦାନର ସ୍ୱତ୍ୱାଧିକାରୀ ଥାଇ ଆଇନକୁ ପଙ୍ଗୁ କରିଦେବାର ବହୁ ପାରଦର୍ଶିତା ପୂର୍ବରୁ ଏବଂ ଏବେ ମଧ୍ୟ ଦଖଲ କରି ବିଶ୍ୱପ୍ରସିଦ୍ଧ ସିଂହଭୂମି ଶାଳ (ବିହାର ଓ ଓଡ଼ିଶା ଅଞ୍ଚଳକୁ ନେଇ) ଜଙ୍ଗଲକୁ ପୂରାପୂରି ଧ୍ୱସ୍ତ-ବିଧ୍ୱସ୍ତ କରିବାଦ୍ୱାରା ପ୍ରକୃତି ତାହାର ଭାରସାମ୍ୟ ଏହି ଅଞ୍ଚଳରେ ହରାଇ ବସିଛି । ଜଙ୍ଗଲ ବା ଅରଣ୍ୟ କହିଲେ ପ୍ରକୃତିକୃତ ଜୈବମଣ୍ଡଳକୁ ହିଁ ବୁଝାଏ, ଯେଉଁଠାରେ ଛୋଟ ବଡ଼ ସବୁ ଶ୍ରେଣୀର ପ୍ରାଣୀ ଏବଂ ଉଭିଦ ନିଜ ନିଜର ସ୍ୱତନ୍ତ୍ରତା ରକ୍ଷା କରି ସେମାନଙ୍କର ବଞ୍ଚିବାର ମାନ ଏବଂ ପ୍ରଣାଳୀକୁ ଆଦାନ ପ୍ରଦାନ ସୂତ୍ରରେ ପ୍ରଭାବିତ

କରିପାରିଥାନ୍ତି । ଏହି ପାରସ୍ପରିକ ଆଦାନ ପ୍ରଦାନ ବିଧି ଓ ଜୈବ ସଂସ୍କୃତିକୁ (Relation of Symbiosis) ବା ବିନିମୟାତ୍ମକ ଜୀବ ସମ୍ପର୍କ ବୋଲି କୁହାଯାଏ । ଠିକ୍ ପୂର୍ବରୁ ଆମ ଗାଁମାନଙ୍କରେ ପ୍ରଚଳିତ ଥିବା ଦଶହଳିଆ ଚାଷୀ, ଏକହଳିଆକୁ ସାହାଯ୍ୟ କରୁଥିବାବେଳେ ଏକହଳିଆ ଥିବା ଚାଷୀ ମଧ୍ୟ ଦଶ ହଳିଆକୁ ସାହାଯ୍ୟ କରେ; କିନ୍ତୁ ଏବର ରାଜନୀତି ପ୍ରଭାବିତ ଗ୍ରାମମାନଙ୍କ ପରି ନୁହେଁ । ଏଣୁ ଆମେ ଝାଟିଆ, ବଣବୁଦା, ହୁଡ଼ି ପାହାଡ଼ ଓ କୌଣସି ବୃକ୍ଷତୋଟାକୁ ଅରଣ୍ୟ ବା ଜଙ୍ଗଲ ବୋଲି କହିବା ଠିକ୍ ହେବ ନାହିଁ; କାରଣ ଏହିସବୁ ତଥାକଥିତ ଜଙ୍ଗଲ କୌଣସି ଭୌଗୋଳିକ ଦାୟିତ୍ୱ ତୁଲାଇ ପାରେ ନାହିଁ ।

କୌଣସି ଏକ ସ୍ଥାନର ଭୂଗୋଳ କହିବା ଅର୍ଥ ସେଠାକାର ଭୂପୃଷ୍ଠର ବିଜ୍ଞାନ ଓ ଅଧିବାସୀକୁ ହିଁ ବୁଝାଏ । ସରକାରୀ ଖାତାରେ ଥିବା ସବୁ ଜଙ୍ଗଲକୁ ଭୌଗୋଳିକ ଦାୟିତ୍ୱ ସମ୍ପୂର୍ଣ୍ଣ ବୋଲି କୁହାଯାଇ ନପାରେ । ଯେଉଁ ଜଙ୍ଗଲ କୌଣସି ଏକ ଅଞ୍ଚଳର ପରିବେଶକୁ ସୁରକ୍ଷିତ କରେ, ସେହି ଜଙ୍ଗଲକୁ ହିଁ ଭୌଗୋଳିକ-ଦାୟିତ୍ୱସମ୍ପନ୍ନ ଜଙ୍ଗଲ ବୋଲି କୁହାଯିବ । ଏଣୁ ଆମ ବିଶ୍ୱପ୍ରସିଦ୍ଧ ବଣେଇ, କେନ୍ଦୁଝର ଏବଂ ମୟୂରଭଞ୍ଜ ଜିଲ୍ଲାର ଅଂଶବିଶେଷ, ସିଂହଭୂମି ଶାଳଜଙ୍ଗଲ ଏବେ ରୁଗ୍ଣ ଏବଂ ଭୌଗୋଳିକ ଦାୟିତ୍ୱ ତୁଲାଇବା ପାଇଁ ଅକ୍ଷମ । ପ୍ରକୃତିଦତ୍ତ ଶାଳ ଜଙ୍ଗଲର ଜଳବାୟୁ ଏକ ସ୍ୱର୍ଣକାତର୍ ଜଳବାୟୁ । ଏହା ସହଜରେ ହରାଯାଇପାରେ; କିନ୍ତୁ ସୃଷ୍ଟି କରିବା ମଣିଷ ପକ୍ଷେ ଅତ୍ୟନ୍ତ ଦୁରୂହ । ଯାହା ଦେଖାଗଲାଣି ଖଣିଜ ସମ୍ପଦ ଖଣିଖାଦାନ, ରେକର୍ଡ଼-ହୋଲଡ଼ିଂ କାଠ, ଶାଳମଞ୍ଜି ସଂଗ୍ରହ ଏବଂ କେନ୍ଦୁପତ୍ର ସଂଗ୍ରହ ଆମ ଭାବୀ ବଂଶଧରଙ୍କ ପାଇଁ ଆଉ ଶାଳ ଜଙ୍ଗଲ ରଖାଇ ଦେବ ନାହିଁ ।

ଏଠାରେ ମୁଁ ପାଠକମାନଙ୍କ ଜ୍ଞାତ ପାଇଁ ଜଣାଇଦେବାକୁ ଚାହେଁ ଏହି ସମୁଦାୟ କେନ୍ଦୁଝର, ମୟୂରଭଞ୍ଜ ଓ ବଣେଇ ଜିଲ୍ଲାକୁ ନେଇ ବିହାରର ସିଂହଭୂମି ଅଞ୍ଚଳ (ପୂର୍ବ ଓଡ଼ିଶାର ଅଂଶ) ଏକ ବିସ୍ତୀର୍ଣ୍ଣ ଲୌହ ଶଯ୍ୟା । ଯେପର୍ଯ୍ୟନ୍ତ ଏହି ବିସ୍ତୀର୍ଣ୍ଣ ଲୌହଶଯ୍ୟା ଉପରେ ଶାଳ ଜଙ୍ଗଲର ଆସ୍ତରଣ ସୁରକ୍ଷିତ ଥିଲା, ସେପର୍ଯ୍ୟନ୍ତ ଏହି ଅଞ୍ଚଳର ଭାଗ୍ୟରେଖା ସୁରକ୍ଷିତ ଥିଲା ଏବଂ ଏହି ଅଞ୍ଚଳକୁ ପ୍ରକୃତି ସୃଷ୍ଟ ବିପର୍ଯ୍ୟୟ ସ୍ପର୍ଶ କରିପାରୁ ନଥିଲା । ଯେଉଁଦିନଠାରୁ ଏହି ଅଞ୍ଚଳରୁ ଜଙ୍ଗଲର ଅବକ୍ଷୟ ଘଟିଲା, ସେହିଦିନଠାରୁ ସୂର୍ଯ୍ୟଙ୍କର ଉତ୍ତାପରେ ଏହି ଅଞ୍ଚଳର ଭୂଭାଗ ଉତ୍ତପ୍ତ ହେବାର ସୁଯୋଗ ସୃଷ୍ଟି ହେଲା ଏବଂ ପାରିପାର୍ଶ୍ୱିକ ବାୟୁମଣ୍ଡଳକୁ ଉତ୍ତପ୍ତ କରିବାକୁ ସକ୍ଷମ ହେଲା । ଏହାର ତୀବ୍ରତା ବଢ଼ିଚାଲେ ସୂର୍ଯ୍ୟଙ୍କର ଉତ୍ତାପ ବଢ଼ିବା ସହିତ ଏବଂ ସୃଷ୍ଟି କରିବାକୁ ସକ୍ଷମ ହୁଏ ବୃହତରୁ

ବୃହତ୍ତର ଏବଂ ବୃହତ୍ତରରୁ ମହାବୃହତ୍ତର ଲଘୁଚାପ ବଳୟ । ଏହାଦ୍ୱାରା ଲଘୁଚାପ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରୁ ଗୁରୁଚାପ ଜନିତ ବାୟୁ ଲଘୁଚାପ ଜନିତ ଶୂନ୍ୟସ୍ଥାନ ପୂରଣ କରିବାକୁ ଖୁବ୍ ଜୋର୍‌ରେ ପ୍ରବାହିତ ହେବାକୁ ଲାଗେ । ଏହାଦ୍ୱାରା ବାତ୍ୟା ଓ ମହାବାତ୍ୟା ସୂତ୍ରପାତ ହୁଏ ଓ ମୟୂରଭଞ୍ଜ, କେନ୍ଦୁଝର, ବଣେଇ ଏବଂ ବାଲେଶ୍ୱର ଜିଲ୍ଲାର 'ଭାଗ୍ୟରେଖା' ଦୋହଲିବାକୁ ଲାଗେ । ବିଶେଷକରି ଏହି ଜିଲ୍ଲାଗୁଡ଼ିକ ବଙ୍ଗୋପସାଗରର ଖୁବ୍ ନିକଟବର୍ତ୍ତୀ ହୋଇଥିବାରୁ ଗୁରୁଚାପ ଜନିତ ବାୟୁ ସମୁଦ୍ରବକ୍ଷରୁ ଭୂଭାଗରେ ସୃଷ୍ଟି ହେଉଥିବା ଲଘୁଚାପ ବଳୟର ଶୂନ୍ୟସ୍ଥାନ ପୂରଣ କରିବାକୁ ଉତ୍ତମ ସୁଯୋଗ ପାଇଥାଏ । ଏଣୁ ବାତ୍ୟାରୁ ମହାବାତ୍ୟା ଓ ମହାବାତ୍ୟାରୁ ମହାପ୍ରଳୟ ଏଠାରେ ମଣିଷ ହିଁ ସୃଷ୍ଟି କରୁଛି । ବିଗତ ଶତାବ୍ଦୀରେ ପର୍ଯ୍ୟାୟକ୍ରମେ ଓଡ଼ିଶାର ପୂର୍ବ ଏବଂ ଉତ୍ତର ଉପକୂଳ ଓ ମୟୂରଭଞ୍ଜ କେନ୍ଦୁଝର ଜିଲ୍ଲାରେ ଯେଉଁସବୁ ଦୁର୍ବିପାକ ଘଟିଗଲା, ଏଗୁଡ଼ିକ ସବୁ ମାନବକୃତ ଓ ବିଶେଷକରି ଦୁର୍ନୀତିରୁ ହିଁ ଉଦ୍ଭବ । ମହା ଦୁର୍ନୀତିରୁ ସୃଷ୍ଟି ହୋଇଛି ମହାପ୍ରଳୟ ଓ ମହାପ୍ରଳୟ ଏବେ ସୃଷ୍ଟିକ କରିଛି ମହାସୁଯୋଗ ମହା-ମହା-ଦୁର୍ନୀତି ପାଇଁ । ବାତ୍ୟା ବଳୟ ଓ ଉପକୂଳ ରାଜପଥ ଅନେକ ମଧ୍ୟରୁ ଏକ ନମୁନା ।

ଏଣୁ ଆମ ଦେଶର ବିଜ୍ଞ ବ୍ୟକ୍ତିମାନଙ୍କୁ ଏବେ ଆହ୍ୱାନ ଆସିଛି ସେମାନେ ଯୁବପୀଢ଼ିକୁ ସୁନିୟନ୍ତ୍ରିତ କରି ଏହି ମହାଦୁର୍ନୀତିର ବଳୟ ମଧ୍ୟରୁ ଜନଜୀବନକୁ ଉଦ୍ଧାର କରିବାକୁ । ବିଶେଷକରି ମୁଁ ଏଠାରେ ଯୁବ ପିଢ଼ିକୁ ଆହ୍ୱାନ କରୁଛି ସେମାନେ ସେମାନଙ୍କ ଭବିଷ୍ୟତ ଗଣତନ୍ତ୍ରର ଆହ୍ୱାନ ଦେଇ ଅଗଣତାନ୍ତ୍ରିକ ପୃଷ୍ଠପୋଷକତା କରୁଥିବା ଧୂର୍ତ୍ତ ରାଜନେତା, ଷଠ, ଦୁର୍ନୀତିଗ୍ରସ୍ତ ରାଜସେବକ ଏବଂ ସେମାନଙ୍କ ସହିତ ହାତ ମିଳାଉଥିବା ମୁନାଫାଖୋର ବ୍ୟବସାୟୀ ଗୋଷ୍ଠୀ ହାତରେ ନିଜ ଭାଗ୍ୟ ଓ ଭବିଷ୍ୟତକୁ ଟେକି ନଦିଅନ୍ତୁ ଓ ଆମ କୀଟଦ୍ରଂଷ୍ଟ ଗଣତନ୍ତ୍ରର କୀଟମାନଙ୍କୁ ବିନାଶ ଘଟାଇବା ପାଇଁ ସାହସର ସହିତ ମାଡ଼ି ଆସନ୍ତୁ । ଏହା ସହିତ ମୁଁ ମୋର ପ୍ରଦେଶବାସୀଙ୍କୁ ସବିନୟ ଅନୁରୋଧ କରୁଛି ସେମାନେ ପ୍ରକୃତିର ଦୁର୍ଲଭ ଉପହାର ଶିମିଳିପାଳ ଅର୍ଥାତ ଶିମିଳିପାହାଡ଼ ଜୀବମଣ୍ଡଳକୁ ସୁରକ୍ଷା ଦେବାକୁ ଆଗେଇ ଆସିବା ସହିତ, କେବଳ ଶିମିଳିପାଳ ନୁହେଁ, ଶିମିଳିପାହାଡ଼ର ଚତୁଃପାର୍ଶ୍ୱରେ ଥିବା ସମସ୍ତ ଜଙ୍ଗଲ ଯାହାକୁ କି ଶିମିଳିପାଳର ବିପଦରୋଧକ ବା ବିପଦ ନିବାରକ ଅଞ୍ଚଳ (Suffer Area) କହିଲେ ଅତ୍ୟୁକ୍ତି ହେବ ନାହିଁ , ସେ ସବୁ ଜଙ୍ଗଲର ସୁରକ୍ଷା ମଧ କରିବା ଆଶୁକର୍ତ୍ତବ୍ୟ ବୋଲି ଗ୍ରହଣ କରନ୍ତୁ । ଏହା ନହେଲେ ମୁଁ ଜଣେ ବାତ୍ୟାବିଧ୍ୱସ୍ତ ଉପକୂଳ ନାଗରିକ ବ୍ୟଥିତ

ହୃଦୟରେ ନିଶ୍ଚିତ ଭାବେ କହୁଛି, ବେଶୀସମୟ ଲାଗିବ ନାହିଁ ମୟୂରଭଞ୍ଜର ସମ୍ପୂର୍ଣ୍ଣ ଶିମିଳିପାହାଡ଼ ଜଙ୍ଗଲ ସହିତ କେନ୍ଦୁଝର, ବଣେଇ ଏବଂ ବାଲେଶ୍ୱର ଜିଲ୍ଲାର ଯାହାକିଛି ବର୍ତ୍ତି ରହିବା କ୍ରାନ୍ତୀୟ ଜଳବାୟୁର ଅମୂଲ୍ୟ ବନ୍ୟ ସମ୍ପଦ ଖୁବ୍ ନିକଟରେ ଲୋପ ପାଇଯିବ । ବିଶେଷକରି ମୟୂରଭଞ୍ଜ, କେନ୍ଦୁଝର ଏବଂ ବାଲେଶ୍ୱର ଏହି ତିନି ଜିଲ୍ଲାର ବୃହତ୍ ଅବବାହିକା (Water Shed) ଅବିଳମ୍ବେ ଧ୍ୱଂସ ପାଇ ସେହି ଜିଲ୍ଲାମାନଙ୍କର ସଭ୍ୟତାର ମୃତ୍ୟୁକୁ ଆହ୍ୱାନ ଦେବ । କାରଣ ଏହା ପ୍ରମାଣିତ ହୋଇସାରିଛି ଅରଣ୍ୟଭରା ପାହାଡ଼ର ମୃତ୍ୟୁରେ ଝରଣା ଓ ନଦୀମାନଙ୍କର ମୃତ୍ୟୁ ଘଟେ, ଝରଣା ଓ ନଦୀମାନଙ୍କର ମୃତ୍ୟୁ ଘଟିଲେ ସେହି ଭୂ-ଖଣ୍ଡରେ ଗଢ଼ି ଉଠିଥିବା ସଭ୍ୟତାର ମଧ୍ୟ ମୃତ୍ୟୁ ଘଟେ । ଏସବୁର ଦୃଷ୍ଟାନ୍ତ ହେଲା ବିଶ୍ୱରେ ଯେତେ ବଡ଼ ବଡ଼ ସଭ୍ୟତା ସେସବୁ ନଦୀମାତୃକା । ଏଣୁ ଶିମିଳିପାଳ ବୃହତ୍ କ୍ରାନ୍ତିୟ ଅରଣ୍ୟ (Tropical Forest) କୁ ରକ୍ଷା କରିବାକୁ ହେଲେ କ୍ରାନ୍ତି ହିଁ ଏକମାତ୍ର ଉପାୟ । ଏଣୁ ମୟୂରଭଞ୍ଜ, କେନ୍ଦୁଝର, ବାଲେଶ୍ୱର ଏବଂ ବଣେଇ ଅଞ୍ଚଳର ଅଧିବାସୀଙ୍କ ପାଇଁ ନିର୍ଣ୍ଣୟାତ୍ମକ ସମୟ ଆସିଛି ସେମାନେ ଆମ ଉପକୂଳବାସୀଙ୍କ ପରି ସ୍ୱାଭିମାନ ଓ ଆତ୍ମମର୍ଯ୍ୟାଦାକୁ ଜଳାଞ୍ଜଳି ଦେଇ ଖଣ୍ଡେ ପୁରୁଣା ଲୁଗା ଓ ଗଣ୍ଡାଏ ଚାଉଳ ପାଇଁ ରିଲିଫ ଟ୍ରକ ପଛରେ ଧାଇଁବାର ସୁଯୋଗ ସୃଷ୍ଟି କରିବେ ନା ଶିମିଳିପାଳର ଭୌଗୋଳିକ ନଦୀମାତୃକା ପଶ୍ଚିମ ଉତ୍ତର-ପୂର୍ବ ସଭ୍ୟତାକୁ ସଞ୍ଜୀବିତ ରଖିବାକୁ ଅପରାଧ ନିବାରଣ କ୍ରାନ୍ତି ଶକ୍ତି ରୂପେ ଉଭା ହେବେ । ମୋର ଦୃଢ଼ ବିଶ୍ୱାସ ଏହାର ଦାୟିତ୍ୱ ସେହି ଅଞ୍ଚଳର ଜନସାଧାରଣ ନନେଲେ ଖୁବ୍ ଅଳ୍ପଦିନ ମଧ୍ୟରେ ଶିମିଳିପାଳ ବା ଶିମିଳିପାଳ ପରିବର୍ତ୍ତେ ଗୁଡ଼ାଏ ମଲା ପାହାଡ଼ ଆମ୍ଭକୁ ରେକର୍ଡ଼ ହେଲଡ଼ିଂ ବା ଅମଲନାମା, ଶାଳମଞ୍ଜି ସଂଗ୍ରହ ଏବଂ କେନ୍ଦୁପତ୍ର ସଂଗ୍ରହ ମାଧ୍ୟମରେ ଆମ ଲୋକପ୍ରିୟ ସରକାର ହସ୍ତାନ୍ତର କରିବେ ଓ ବାହାରୁ ଅନୁଦାନ ଆଣି ୟୁକାଲିପଟାସ, ଆକାଶିଆ ଓ କାଶିଆ ଗଛ ସେହି ସୁସ୍ଥ ଚରିତ୍ରବାନ କର୍ମଚାରୀମାନଙ୍କ ମାଧ୍ୟମରେ କରାଇବେ । ଏହା ଆମ୍ଭଙ୍କୁ ମନେରଖିବାକୁ ହେବ ଯେକୌଣସି ଗଛ ଚାଷ ସୃଷ୍ଟି କରେ ଗଛମାନଙ୍କର ବଗିଚା କିନ୍ତୁ ଜଙ୍ଗଲ ବା ଅରଣ୍ୟ ନୁହେଁ କିମ୍ବା ଜୈବମଣ୍ଡଳ ନୁହେଁ । ଜୈବମଣ୍ଡଳର ସୃଷ୍ଟିକର୍ତ୍ତା ପ୍ରକୃତି ଯେ ଭୌଗୋଳିକ ଦାୟିତ୍ୱକ୍ଷମ ତାହାର ସ୍ଥାନ ୟୁକାଲିପଟାସା କାଶିଆ- ଆକାଶିଆ ସାହୁକାରର ମର୍ଜିର ବଗିଚା ନୁହେଁ । ହଁ, ଗୋଟିଏ ଉପକାର ଓଡ଼ିଶା ପ୍ରଦେଶର ସମ୍ଭବ ହେବ, ଗଛ ଚାଷ ମାଧ୍ୟମରେ ଜଙ୍ଗଲ ମହକୁମାର ଉପରସ୍ତରରେ ନୂତନ ଥାକ (New Tire) ଯୋଡ଼ା ହେବା ସହିତ ରହିଥିବା ଉଚ୍ଚଶ୍ରେଣୀ ଥାକଗୁଡ଼ିକରେ ଆଉକିଛି ଚେୟାର ସଂଯୁକ୍ତ ହେବ ଏବଂ ସରକାର ଆନୁଗତ୍ୟ

ଉପାୟବନ୍ତ ଅଧିକାରୀମାନଙ୍କୁ ପ୍ରଧାନ ପ୍ରଧାନ ବିଭାଗ ବା ସଂସ୍ଥା ମାଡ଼ିବସିବାକୁ ଶୁଭଲଗ୍ନ ସୃଷ୍ଟି ହେବ; କିନ୍ତୁ ଏହି ଜିଲ୍ଲାଗୁଡ଼ିକ ବିଶେଷକରି ପ୍ରଦେଶର ଲୋକଙ୍କର ହିତ ସାଧନ ଆଶା କ୍ଷୀଣରୁ କ୍ଷୀଣତର ହେବ । ଏହାର ପ୍ରମାଣ ସ୍ୱରୂପ, ପୂର୍ବ ଗଡ଼ଜାତ ମିଶ୍ରଣ ସମୟରେ ସ୍ଥାନୀୟ ଭୂବୃତ୍ତାନ୍ତ ନକ୍ସା ବା Topographical Map ରେ ଚିହ୍ନିତ ଶିମିଳିପାଳ ଓ ଅନ୍ୟ ଜଙ୍ଗଲ ବ୍ଲକଗୁଡ଼ିକର ଅବସ୍ଥା କ'ଣ ଥିଲା ଏବଂ ଏବର ଟପୋ ମ୍ୟାପରେ ସେହିସବୁ ବ୍ଲକଗୁଡ଼ିକ କିପରି ଅବସ୍ଥାରେ ଅଛି ଓ ସରଜମିନ୍‌ରେ ବ୍ଲକଗୁଡ଼ିକର ବାହାର ଓ ଭିତର ଦୃଶ୍ୟ କିପରି ଅଛି ତାହା ଅନୁଧ୍ୟାନ କଲେ ଆମ ଦେଶବତ୍ସଳ ଅମଲାତନ୍ତ୍ର ହାତରେ ଆମ ଜାତୀୟ ସମ୍ପତ୍ତି କେତେ ସୁରକ୍ଷିତ ତାହା ପ୍ରଦେଶ ତଥା ଦେଶବାସୀ ସହଜରେ ଅନୁଭବ କରିପାରିବେ । ଏଠାରେ ମୁଁ ସରକାରଙ୍କୁ ବିନତି କରୁଛି ଶିମିଳିପାଳ ଭିତରେ କ'ଣ ଘଟୁଛି ଓ ଶିମିଳିପାଳ ଜୈବମଣ୍ଡଳର ଅବସ୍ଥା କ'ଣ, ତାହା 'ଭିଡ଼ିଓ ସୁଟିଂ' (Video Suiting) ମାଧ୍ୟମରେ ଜନସାଧାରଣଙ୍କୁ ଜଣାଇ ଦିଆଗଲେ, ଜନସଚେତନତା ବୃଦ୍ଧି ସଙ୍ଗେ ସଙ୍ଗେ ଦାୟିତ୍ୱରେ ଥିବା କର୍ମଚାରୀମାନଙ୍କର ଦାୟିତ୍ୱବୋଧ କେତେଦୂର ତାହା ମଧ୍ୟ ସ୍ପଷ୍ଟ ହୋଇଯିବ ଜନସାଧାରଣଙ୍କ ସମ୍ମୁଖରେ । ସେହିପରି ଲୁଣା ଜଙ୍ଗଲର ବର୍ତ୍ତମାନ ଅବସ୍ଥା କ'ଣ ତାହା ମଧ୍ୟ ପ୍ରଦେଶ ତଥା ଉପକୂଳବାସୀଙ୍କ ଦୃଷ୍ଟିକୁ ଅଣାଯାଉ । ଏହାଦ୍ୱାରା ଉତ୍ତରାଧିକାର ସୂତ୍ରରେ ଯୁବପୀଢ଼ିକୁ ମିଳୁଥିବା ସମ୍ପତ୍ତିର ଅବସ୍ଥା କ'ଣ ସେମାନେ ଜାଣିବାକୁ ଓ ଦେଖିବାକୁ ସୁଯୋଗ ସୃଷ୍ଟି ହେବ । ଏପରି ସୁଯୋଗ ସୃଷ୍ଟି ହେଲେ ଯୁବ ପୀଢ଼ି ପ୍ରଦେଶର ଏହି ଦୁର୍ଦ୍ଦିନରେ ଭାଙ୍ଗି ନପଡ଼ି ଦକ୍ଷତାର ସହିତ ସେମାନଙ୍କ ନ୍ୟାୟୋଚିତ ଅଧିକାର ସାବ୍ୟସ୍ତ ପାଇଁ ଆଗେଇ ଆସିବେ ଏବଂ ସେମାନଙ୍କ ମନୋବଳ ସୁଦୃଢ଼ ହେବ । ଯଦି ଆମ ଲୋକତାନ୍ତ୍ରିକ ସରକାର ଆଞ୍ଚଳିକ ସ୍ୱାର୍ଥରକ୍ଷା ପାଇଁ କିଛି କରିବାକୁ ଚାହାନ୍ତି, ତାହାସବୁ ସେହି ଅଞ୍ଚଳର ଅଧିବାସୀଙ୍କ ଜ୍ଞାତରେ କରିବାକୁ ଚେଷ୍ଟିତ ହେଲେ ଦୁର୍ନୀତିପରାୟଣ ବ୍ୟକ୍ତିବିଶେଷ ଆପେଆପେ ସଠିକ୍ ହୋଇଯିବେ ଓ ଦୁର୍ନୀତିର ପ୍ରକୋପ ଆଞ୍ଚଳିକ ଯୁବଗୋଷ୍ଠୀର ସୁରକ୍ଷା ବଳୟରେ ଦ୍ରବୀଭୂତ ହୋଇଯିବ । ଏହାଦ୍ୱାରା ଆଞ୍ଚଳିକ ସ୍ୱାର୍ଥରକ୍ଷା ହେବା ସହିତ ଭୌଗୋଳିକ ସ୍ୱାର୍ଥରକ୍ଷା ଅର୍ଥାତ ଭୌଗୋଳିକ ସ୍ୱାସ୍ଥ୍ୟରକ୍ଷା ମଧ୍ୟ ହୋଇପାରିବ ।

ବିଳମ୍ବ ହେଲେ ମଧ୍ୟ ଶିମିଳିପାଳ ସହିତ ଏହାର ଆଖପାଖ ଜଙ୍ଗଲ ସୁରକ୍ଷା ଦାୟିତ୍ୱ ସ୍ଥାନୀୟ ଅଧିବାସୀମାନେ ନନେଲେ ଓଡ଼ିଶା ଓ ଓଡ଼ିଶା ବାହାରେ ଶିମିଳିପାଳ ଅସ୍ଥିରେ ଗୁଡ଼ାଏ ମାର୍ବଲ ଘର ଗଢ଼ି ଉଠିବ ସିନା, ସ୍ଥାନୀୟ ମୟୂରଭଞ୍ଜ, କେନ୍ଦୁଝର, ବାଲେଶ୍ୱର ଏବଂ ବଣେଇ ଅଞ୍ଚଳରେ ବାତ୍ୟାବିଧ୍ୱସ୍ତ ଉପକୂଳ ଜିଲ୍ଲା ପରି ଗୁଡ଼ିଏ ପୋଷ୍ୟ

ଗ୍ରାମ୍ୟ ଓ ଗୁଡ଼ିଏ ଅନ୍ନଛତ୍ର କେନ୍ଦ୍ର ସୃଷ୍ଟି ହେବାର ସୁଯୋଗ ଆସିବ । ଉପକୂଳ ଅଞ୍ଚଳରେ ମହାଦୁର୍ନୀତିରୁ ମହାପ୍ରଳୟ ଓ ମହାପ୍ରଳୟରୁ କଳାଧନର ମହାସୁଯୋଗ ସୃଷ୍ଟି ହେଲାପରି ଏହାର ପୁନରାବୃତ୍ତି ଘଟିବ ଉତ୍ତର-ପଶ୍ଚିମ ଓଡ଼ିଶାରେ । ଆମ ସ୍ୱାଭିମାନରେ କୁଠାରାଘାତ କରୁଥିବା ଯେକୌଣସି ବ୍ୟକ୍ତିବିଶେଷ ହୁଅନ୍ତୁନା କାହିଁକି, ସେମାନଙ୍କୁ ଉପଯୁକ୍ତ ଶାସ୍ତି ମିଳିବ ଯଦି ସରକାର ଆଞ୍ଚଳିକ ଅଧିବାସୀଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ବିଶ୍ୱାସକୁ ନିଅନ୍ତି ଏବଂ ଆଞ୍ଚଳିକ ଲୋକଙ୍କର ସଚେତନତା ବୃଦ୍ଧି ଘଟାଇବାକୁ ପ୍ରକୃତ ଆନ୍ତରିକତା ପ୍ରକାଶ କରନ୍ତି ।

ଶିମିଳିପାଳ (ଅମଲାତନ୍ତ୍ରୀକ) କୁ ରେକର୍ଡ଼ ଓ ହୋ଼ଡ଼ିଂ କର୍କଟ ମୁକ୍ତ କରିବାକୁ ହେଲେ ଏହିସବୁ କାର୍ଯ୍ୟାନୁଷ୍ଠାନ ଅତ୍ୟନ୍ତ ଜରୁରୀ । ଏହା କେବଳ ଶିମିଳିପାଳ କାହିଁକି ଓଡ଼ିଶାର ପ୍ରତ୍ୟେକ ଏହି କର୍କଟ ବ୍ୟାଧିଗ୍ରସ୍ତ ଜଙ୍ଗଲକୁ ପ୍ରୟୋଗ କରିବା ବାଞ୍ଛନୀୟ କାଠ- ମାଫିଆମାନଙ୍କ କବଳରୁ ଆମ ଜଙ୍ଗଲଗୁଡ଼ିକ ସୁରକ୍ଷାପରିପ୍ରେକ୍ଷୀରେ ।

(୧) ରେକର୍ଡ ହୋଲଡିଂ କାଠ ଚାଲାଣ କ୍ଷମତା ଡି.ଏଫ.ଓ.ମାନଙ୍କ ଠାରୁ କାଢ଼ି ନିଆଯାଇ ସଂପୃକ୍ତ ଟେରିଟୋରିଆଲ୍ ସର୍କଲ କଞ୍ଜରଭେଟରମାନଙ୍କ ହାତରେ ନ୍ୟସ୍ତ କରାଯିବା ଓ ସଂପୃକ୍ତ ଡିଭିଜନର କୌଣସି କର୍ମଚାରୀ ରେକର୍ଡ଼ ହୋଲଡ଼ିଂ କାର୍ଯ୍ୟରେ ସଂପୃକ୍ତ ହେବାକୁ ବିଲକୁଲ ନଦେବା । ଏହାର ଯୁକ୍ତି ହେଲା ସେଠାକାର ଅଧିକାଂଶ କର୍ମଚାରୀ ପ୍ରାୟ ସ୍ଥାନୀୟ କିମ୍ବା ବହୁବର୍ଷ ହେଲା ସେହି ସ୍ଥାନରେ ରହି ଆଇନକୁ ଠକିବାର ସୂତ୍ରରେ ଅଭିଜ୍ଞ ।

(୨) ସେହିପରି ସ୍ଥାନୀୟ ରେଭିନ୍ୟୁ ଡିପାର୍ଟମେଣ୍ଟର କୌଣସି କର୍ମଚାରୀଙ୍କୁ ଏହି କାର୍ଯ୍ୟରେ ସମ୍ପୃକ୍ତ କରା ନଯାଉ; କାରଣ ଏହିସବୁ କର୍ମଚାରୀ ପ୍ରାୟ ସେଠାକାର ସ୍ଥାନିକ କିମ୍ବା ବହୁଦିନ ହେଲା ସେଠାରେ ରହି ଆସୁଛନ୍ତି ।

(୩) କାଠ ମାଫିଆମାନଙ୍କର ଏହି ଦୁଇ ହାତ ଦୁର୍ବଳ ହୋଇଗଲେ 'କାଠ ରାକେଟ୍' ଦୁର୍ବଳ ହୋଇଯିବ ।

(୪) ସେହିପରି ସ୍ଥାନୀୟ ରେଭିନ୍ୟୁ ଡିପାର୍ଟମେଣ୍ଟର କାର୍ଯ୍ୟ ସେହି ଜିଲ୍ଲାର ସଦର ମହକୁମାର କଲେକ୍ଟର ଅଫିସ ତୁଲାଉ । କଲେକ୍ଟର ଅଫିସ ରେଭେନ୍ୟୁ ସୁପରଭାଇଜର, ଅମିନ, ଏ.ଡି.ଏମ୍.ଙ୍କ ତତ୍ତ୍ୱାବଧାନରେ ଏହି କାର୍ଯ୍ୟ କରନ୍ତୁ ।

(୫) ଯଦି ପ୍ରକୃତରେ, କୌଣସିଠାରେ ପ୍ରଜାସ୍ୱତ୍ୱ କାଠ ଅଛି, ତାହାର ଉପଯୁକ୍ତ ପ୍ରମାଣ ମିଳିଲା ପରେ ଆଞ୍ଚଳିକ କଞ୍ଜରଭେଟରଙ୍କ ନିର୍ଦ୍ଦେଶ ମତେ ସ୍ଥାନୀୟ ଡି.ଏଫ୍.ଓ.ମାନେ ସ୍ଥାନାନ୍ତରିତ ପର୍ମିଟ ସଂପୃକ୍ତ ଫରେଷ୍ଟ କର୍ପୋରେସନ

ଡିଭିଜନାଲ ମ୍ୟାନେଜରମାନଙ୍କୁ ଦେଇ ସେହି କାଠଗୁଡ଼ିକୁ ମୀମାଂସା କରିବା ବ୍ୟବସ୍ଥା କରାଯାଉ ।

(୬) ଗ୍ରାମ୍ୟ ଲୋକଙ୍କଠାରୁ ଏହିସବୁ ପ୍ରଜାସ୍ୱତ୍ୱ କାଠ ପ୍ରାଦେଶିକ ଫରେଷ୍ଟ କର୍ପୋରେସନ କିଣିବା ପାଇଁ ସରକାର ବ୍ୟବସ୍ଥା କରନ୍ତୁ ଓ ଏଥିପାଇଁ ବିଭିନ୍ନ ପ୍ରକାର କାଠ ଓ ତାହାର ସାଇଜକୁ ନେଇ ଦରଧାର୍ଯ୍ୟ କରନ୍ତୁ ଓ ଆଞ୍ଚଳିକ କାଠ ବଜାରରେ ଏହିସବୁ କାଠ ଫରେଷ୍ଟ କର୍ପୋରେସନ ମାଧମରେ ବିକ୍ରି ହେଉ ।

(୭) ଏହାଦ୍ୱାରା ପ୍ରକୃତ ରେକର୍ଡ ହୋଡିଂ ପ୍ଲଟର କାଠ ବିକ୍ରିରେ କାଠ ରାକେଟିୟର ମାନଙ୍କ ଦ୍ୱାରା ସ୍ଥାନୀୟ ଲୋକଙ୍କ ଠକାମିର ସମ୍ଭାବନାକୁ ଏଡ଼ାଇ ଦେବା ସଙ୍ଗେ ସଙ୍ଗେ କାଠ ଗଛର ସ୍ୱତ୍ୱାଧିକାରୀମାନେ ଉପଯୁକ୍ତ ପ୍ରାପ୍ୟ ପାଇପାରିବେ ।

(୮) ଏହିସବୁ କାଠ ସ୍ୱତ୍ୱାଧୀକାରୀ ଯାଞ୍ଚ କାର୍ଯ୍ୟ କଞ୍ଜରଭେଟରମାନେ ସ୍ଥାନୀୟ ଡି.ଏଫ.ଓ.ମାନଙ୍କ ଉପସ୍ଥିତିରେ କରିବା ବାଞ୍ଛନୀୟ ଓ ସେହି ଯାଞ୍ଚ ରେକର୍ଡରେ ସଂପୃକ୍ତ ଡି.ଏଫ.ଓ. ନିଜର ସାର୍ଟିଫିକେଟ୍ ଦେବାକୁ ବ୍ୟବସ୍ଥା ରହିବା ଉଚିତ ।

(୯) ପ୍ରିନ୍ସିପାଲ ଚିଫ କଞ୍ଜରଭେଟରଙ୍କ ଅଫିସରେ ଅବସ୍ଥାପିତ ଚିଫ୍ କଞ୍ଜରଭେଟର ଏହି କାର୍ଯ୍ୟ ତଦାରଖ କରିବେ ଓ ଏହିସବୁ କାର୍ଯ୍ୟର ଶତକଡ଼ା ୯୦ ଭାଗ ସେ ଚେକ୍ କରିବେ ।

(୧୦) ପ୍ରତ୍ୟେକ ମାସ ଶେଷରେ ସେହି ଜଙ୍ଗଲ ଡିଭିଜନରୁ କେତେ ଗଛ ପ୍ରଜାମାନଙ୍କ ଜମିରୁ ସ୍ଥାନାନ୍ତରିତ ହୋଇଛି ତାହାର ସମ୍ବାଦ ସେହି ଜିଲ୍ଲାର ଲୋକସମ୍ପର୍କ ଅଫିସରଙ୍କ ମାଧମରେ ଜନସାଧାରଣଙ୍କୁ ଜଣାଇ ଦିଆଯିବାକୁ ବ୍ୟବସ୍ଥା ରହିବ ।

ଏ ପ୍ରକାର ସମୟାନୁକ୍ରମିକ କାର୍ଯ୍ୟାନୁଷ୍ଠାନ ନହେଲେ ପ୍ରଜାସ୍ୱତ୍ୱ ଜମିରୁ ଗଛ ସ୍ଥାନାନ୍ତରିତ ବାହାନାରେ ଆମ ପ୍ରଦେଶ ଜଙ୍ଗଲ ସବୁ ସଫା ହୋଇ ସୃଷ୍ଟିକରିବ ଗୁଡ଼ିଏ ମଲା ପାହାଡ଼ ଓ ଏମାନଙ୍କ ସହିତ ଯୋଗ ଦେବ ଆମ ମୃତ ଉପକୂଳ ଏବଂ ସୃଷ୍ଟି କରିବେ ଏକ ପ୍ରକାଣ୍ଡ ସଂସ୍କୃତି ବିହୀନ- ମରୁଭୂଖଣ୍ଡ ।

***

